ସଚିତ୍ର ଓ ବୃହତ

# ଲୀଳାବତୀ ସୂତ୍ର

ଏହା ସଂପୂର୍ଣ୍ଣ ଜ୍ୟୋତିଷ ଶାସ୍ତ୍ର ବା
ଗଣିତ ବିଦ୍ୟା ଅଟେ



ଲେଖକ : କବିରାଜ ଶ୍ରୀ ତାରେଶ୍ୱର ଚୌଧୁରୀ
ଗ୍ରା. ପୋ. : ସଂପୁର, ଥାନା : ବୋଲଗଡ଼, ଜିଲ୍ଲା : ପୁରୀ



ପ୍ରକାଶକ : ସନ୍ତୋଷ ପ୍ରକାଶନୀ
ପୁରୁଣା ବସ୍ ଷ୍ଟାଣ୍ଡ, ବ୍ରହ୍ମପୁର-୭୬୦୦୦୧
ପ୍ରାପ୍ତିସ୍ଥାନ : ମହିମା ମହଲ
ଷ୍ଟେଟ ବ୍ୟାଙ୍କ ରୋଡ଼, ବ୍ରହ୍ମପୁର-୭୬୦୦୦୧
ନୂତନ ମୁଦ୍ରଣ     ମୂଲ୍ୟ : ସାତଟଙ୍କା ପଚିଶ ପଇସା

●

ସଚିତ୍ର ଓ ବୃହତ୍

# ଲୀଳାବତୀ ସୂତ୍ର

●

ଲେଖକ : **ଶ୍ରୀ ତାରେଶ୍ୱର ଚୌଧୁରୀ**

●

ପ୍ରକାଶକ : **ସନ୍ତୋଷ ପ୍ରକାଶନୀ**
ପୁରୁଣା ବସ୍ଷ୍ଟାଣ୍ଡ, ବ୍ରହ୍ମପୁର-୭୬୦୦୦୧

●

ପ୍ରାପ୍ତିସ୍ଥାନ : **ମହିମା ମହଲ**
ଷ୍ଟେଟ ବ୍ୟାଙ୍କ୍ ରୋଡ଼, ବ୍ରହ୍ମପୁର-୭୬୦୦୦୧

---

**ସାବଧାନ**—ଆମ୍ଭ ବହିର ନାମ ଅନୁକରଣ କରି ଆଜି ଅନେକ ନକଲି ବହି ବାହାରିଲଣି । ଏଣୁ ପାଠକଙ୍କୁ ଅନୁରୋଧ, କିଣିଲାବେଳେ ନିମ୍ନଲିଖିତ ଠିକଣା ଦେଖି କିଣନ୍ତୁ ।

---

## ବିଶେଷ ଘୋଷଣା

ପ୍ରିୟ ବ୍ୟବସାୟୀ ଓ ପାଠକ ବୃନ୍ଦ,

ଆମ୍ଭର ବିନମ୍ର ଅନୁରୋଧ କି, ଆମ୍ଭର କେତେକ ବହିରେ ପ୍ରଚୁର ହୋଇଛି ଯେ ପୁରୁଣା ବସ୍ଷ୍ଟାଣ୍ଡ, ବ୍ରହ୍ମପୁର-୧ରେ ଥିବା ଶ୍ରୀ ଦୁର୍ଗା ବୁକ୍ ସାପ୍ ବହି ଦୋକାନଟି ଘୁଞ୍ଚିଗଲା ବୋଲି, କିନ୍ତୁ ଉକ୍ତ ଦୋକାନଟି ଘୁଞ୍ଚିନାହିଁ । ସେହି ବସ୍ଷ୍ଟାଣ୍ଡରେ ଆପଣଙ୍କ ସେବା ପାଇଁ ରହିଛି ଓ ରହିବ ।

॥ ଇତି ॥

ବ୍ରାଞ୍ଚ-**ମହିମା ମହଲ** — **ସନ୍ତୋଷ ପ୍ରକାଶନୀ**

ଷ୍ଟେଟବ୍ୟାଙ୍କ ରୋଡ଼, ବ୍ରହ୍ମପୁର-୧ — ପୁରୁଣା ବସ୍ଷ୍ଟାଣ୍ଡ, ବ୍ରହ୍ମପୁର-୧

# —ମୁଖବନ୍ଧ—

ଆମର ଜନ୍ମଭୂମି ଭାରତ ବର୍ଷରେ ଗଣିତ ଶାସ୍ତ୍ର ଲୀଳାବତୀର ଆଲୋଚନା ବହୁ କାଳରୁ ଚଳି ଆସୁଅଛି, ତଥା ଉତ୍କଳ ପ୍ରାନ୍ତରେ ମଧ୍ୟ ସେଥିରୁ କିଂସ୍ୱଦଂଶ ପ୍ରଚଳିତ ହୋଇ ଆସୁଅଛି । କିନ୍ତୁ ଗାଉଁଲି ଅବଧାନମାନଙ୍କ ମଧ୍ୟରୁ କେହି କେହି ଲୀଳାବତୀ ସୂତ୍ର ଆଖ୍ୟା ଦେଇ କେତେକ ଗାଉଁଲି ଉତ୍କଳ ଭାଷାରେ ପଦ୍ୟ ରଚନା କରି ଗ୍ରାମ ଚଟାଶାଳୀରେ ପଢ଼ାନ୍ତି । କିନ୍ତୁ ସେହି ପଦ୍ୟ ଲୀଳାବତୀ ବା ପଣ୍ଡିତ ଶ୍ରୀମଦ୍ ଭାସ୍କରାଚାର୍ଯ୍ୟଙ୍କ ରଚିତ ସଂସ୍କୃତ ଲୀଳାବତୀର ଅନୁବାଦ ନୁହେ କି ପ୍ରକୃତ ଲୀଳାବତୀର ପନ୍ଥା ବି ନୁହେଁ । ଏଠାରେ ସାମାନ୍ୟ ଏକ ଉଦାହରଣ ଦେଇ ଆମ୍ଭ ଯୁକ୍ତିର ବାସ୍ତବତା ପାଠକ ପାଠିକାମାନଙ୍କ ସମ୍ମୁଖରେ ଉପସ୍ଥାପିତ କରୁଅଛୁଁ । ଯଥା—

ପଣକୁ ପଣ ପାଞ୍ଚକଡ଼ା ମାଗଣପଣ ଗଣ୍ଡା ଅଷ୍ଟ ଦାଢ଼
ଗଣ୍ଡା ଗଣ୍ଡା ଅଷ୍ଟ ବଦାଢ଼ ହୁଅଇ କଡ଼ା ପଣ ବେନି ଦାଢ଼,
ଏହି ମତେ କଡ଼ା ଗଣ୍ଡାକୁ ଗୁଣିଲେ ହୁଅଇ ବଦାଢ଼ ବେନି
କଡ଼ାକୁ କଡ଼ାରେ ଗୁଣିଲେ ଜାଣିବ ବଦାଢ଼ର ଅର୍ଦ୍ଧ ହେନି,
କାହାଣ ସଙ୍ଗତେ ଯାହାକୁ ଗୁଣିବ ମୂଳ ତାର ଅଟେ ସେହି
ଚଟାମାନଙ୍କର ପ୍ରୟୋଜନ ଅର୍ଥେ ଲୀଳାବତୀ ସୂତ୍ର କହି ।

ଉପରୋକ୍ତ ଗଣିତ ସୂତ୍ର ଲୀଳାବତୀରେ ଆଦୌ ନାହିଁ । ଆମ୍ଭର ଉକ୍ତ ପୁସ୍ତକଟି ପାଠକଲେ ସ୍ପଷ୍ଟ ଜଣାଯିବ । ଲୀଳାବତୀରେ ସାମାନ୍ୟ ଭଗ୍ନାଂଶ, ଦଶମିକ ଭଗ୍ନାଂଶ ଇତ୍ୟାଦି ଉନ୍ନତ ଧରଣର

ସାଧନମାନ ପରିଦୃଷ୍ଟ ହୁଏ । ତାହା ସାହାଯ୍ୟରେ ଉଲ୍ଲିଖିତ ଗାଉଁଲି ଗଣିତ ଧାରଟି ଅଳ୍ପକ୍ଷଣରେ ସାଧନ କରାଯିବ । ଗଣ୍ଡା ଗଣ୍ଡା ଦାଢ଼ ବଢ଼ାଢ଼ର ଆଉ ପ୍ରୟୋଜନ ନାହିଁ ।

ବାସ୍ତବ ଲୀଳାବତୀ ଗ୍ରନ୍ଥର ବ୍ୟବହାର ଏହିପରି ଭାବେ ଅବାସ୍ତବ ଭାବରେ ପରିଣତ ହେବାର ଦେଖି ସାହିତ୍ୟ ଶାସ୍ତ୍ରୀ ଗଣିତଜ୍ଞ ପଣ୍ଡିତ ଶ୍ରୀଯୁକ୍ତ ନୃସିଂହ ଚରଣ ପଟ୍ଟନାୟକ ପ୍ରକୃତ ଲୀଳାବତୀ ଶ୍ଳୋକର ପ୍ରଶ୍ନ ସାଧନ ଇତ୍ୟାଦିକୁ ଆଧୁନିକ ରୀତିରେ ପରିଣତ କରି 'କମଳନୀ ବ୍ୟାଖ୍ୟାଦି ସହିତା' ନାମକରଣ କରି ଖଣ୍ଡିଏ ପୁସ୍ତକ ରଚନା କରି ଅଛନ୍ତି, ତାହା ଅଦ୍ୟାବଧି ପ୍ରକାଶିତ ହୋଇପାରି ନାହିଁ । ସେହି ପୁସ୍ତକଟିରେ ମୂଳ ଶ୍ଳୋକ ଯୁକ୍ତ ଓ ବହୁ ପ୍ରକାଶ ଆଲୋଚନା ପୂର୍ଣ୍ଣ ହୋଇ ବୃହଦାକାର ଧାରଣ କରିଅଛି । ପଣ୍ଡିତ ମହାଶୟ ସେ ଲେଖାଗୁଡ଼ିକ ପଢ଼ି ମୋତେ ବୁଝାଇଥିଲେ । ପଣ୍ଡିତ ମହାଶୟ ଲୀଳାବତୀ ଗ୍ରନ୍ଥର ଭାଷା, ପ୍ରକ୍ରିୟା ସୂତ୍ର ଓ ସାଧନ ଇତ୍ୟାଦି ଆଧୁନିକ ରୀତିରେ ରଚନା କରି ଅଛନ୍ତି, ଏଣୁ ମୁଁ ତାଙ୍କୁ ଧନ୍ୟବାଦ ଦେଉଅଛି ।

## ଲୀଳାବତୀ ଲେଖକଙ୍କର ପରିଚୟ

ଲୀଳାବତୀ ଗ୍ରନ୍ଥ ଓ ଗ୍ରନ୍ଥର ଲେଖକ ସ୍ୱର୍ଗୀୟ ପଣ୍ଡିତ ଶ୍ରୀମଦ୍ ଭାସ୍କରାଚାର୍ଯ୍ୟ ସମ୍ବନ୍ଧରେ ଜ୍ଞାତବ୍ୟ ବିଷୟ କିଛି ଲେଖିବା ଉଚିତ ମନେକରେ । ଯେହେତୁ ଉକ୍ତ ଗ୍ରନ୍ଥ ଓ ଗ୍ରନ୍ଥର ରଚକଙ୍କ ବିଷୟରେ ଭାରତୀୟ ଯେ କେହି ବିଜ୍ଞ ବିଶେଷ କିଛି ନା କିଛି ଜାଣନ୍ତି । ତେଣୁ ସେହି ମହାତ୍ମାଙ୍କ ରଚିତ ଗୋଳାଧ୍ୟାୟର ଶେଷରୁ ଯାହାକିଛି ଦେଖିବାକୁ ପାଇଲି ତାହା ସଂକ୍ଷେପରେ ନିମ୍ନରେ

ପ୍ରକାଶ କଲା । ୧୦୩୭ ଶକାବ୍ଦରେ ସେହି ମହାଭାଗ ୧୧୧୪ ଖ୍ରୀ.ଅ.ରେ ଅର୍ଥାତ୍ ବଜାଡ଼ାବାଡ଼ରେ ଜନ୍ମଗ୍ରହଣ କରିଥିଲେ । ତାଙ୍କର ପିତାଙ୍କ ନାମ ମହେଶ୍ୱର ପାଧ୍ୟାୟ । ସେ ଜଣେ ପରମ ବୈଷ୍ଣବ ଥିଲେ ଏବଂ ସ୍ମାର୍ତ୍ତ ବୈଦିକ ଗ୍ରନ୍ଥରୁ ବହୁତ ଅଧ୍ୟୟନ କରିଥିଲେ । ତାଙ୍କର ଜୀବନ ଚରିତ ଅତ୍ୟନ୍ତ ସରଳ ଥିଲା । ତାଙ୍କର ଜୀବନରେ ସେ ଯେଉଁ ଶାସ୍ତ୍ରମାନଙ୍କରେ କୃତକାର୍ଯ୍ୟ ହୋଇଥିଲେ ତାହା ଜାଣିବା ସହଜ ନୁହେଁ । ଯେହେତୁ ସେ ସମ୍ବନ୍ଧେ ଧାରାବାହିକ କିଛି ଲେଖା ଏକାଧାରରେ ମିଳିବା କଷ୍ଟକର । ତଥାପି ନିମ୍ନଲିଖିତ ଶ୍ଳୋକରୁ ଯାହାକିଛି ଜଣାପଡ଼ୁଛି ତାହା ବିଜ୍ଞ ପାଠକପାଠିକାମାନେ ହୃଦୟଙ୍ଗମ କରିବେ ।

ଯଥା — ଅଷ୍ଟୌ ବ୍ୟାକରଣାନିଷଟ୍ ଭିଷଜାଂ
ବ୍ୟାଖ୍ୟେତ୍ୱଃ ସଂହିତାଃ ।
ଷଟ୍ ତର୍କୋନ ଗଣିତାନି ପଞ୍ଚଚତୁରେ
ବେଦାନଧୀତେ ସ୍ମୃଯଃ ।
ରତ୍ନାନାଂ ତ୍ରିତୟଂ ଦ୍ୱୟଂଚ ବୁବୁଧେ
ମୀମାଂସୟୋ ଅନ୍ତରଂ ।
ସଦବ୍ରହ୍ମୈକ ମଗାଧବୋଧ ମହିମାଂ
ସୋଽସ୍ୟାଃକବି ଭାସ୍କରଃ ।

ଅର୍ଥାତ୍—ଏହି କବି ଭାସ୍କର ଅଷ୍ଟବ୍ୟାକରଣ, ଷଟ୍ ବୈଦ୍ୟଶାସ୍ତ୍ର, ଷଟ୍ ତର୍କଶାସ୍ତ୍ର, ପଞ୍ଚଗଣିତଶାସ୍ତ୍ର, ଚତୁର୍ବେଦ, ତିନିରତ୍ନଶାସ୍ତ୍ର, ମୀମାଂସାଦ୍ୱୟ (ପୂର୍ବ ମୀମାଂସା ଓ ଉତ୍ତର ମୀମାଂସା ବା ବେଦାନ୍ତ) ସଦ୍ ବ୍ରହ୍ମ ଏକର ଅଗାଧ ମହିମା ବୋଧ କରିଥିଲେ ।

ପାଶ୍ଚାତ୍ୟ ଗଣିତଜ୍ଞ ଲାଇବ୍ନିଜ୍ ଏବଂ ନିଉଟନ୍ ନୂତନ ଗଣିତକୁ ଉଦ୍ଭାବନ କରିଥିଲେ ବୋଲି ଯେତେବେଳେ ବାଦାନୁବାଦ ଚଳାଉଥିଲେ, ତା'ର ୩୦୦ ବର୍ଷ ପୂର୍ବରୁ ଭାସ୍କରାଚାର୍ଯ୍ୟ ତାହା ଜାଣିଥିଲେ ।

ଭଗ୍ନାଂଶ ପ୍ୟାର ସଙ୍କେତ ( ÷ ), ତତ୍ପରେ ଗାଣିତିକ ପ୍ରଗ୍ରେସନ ଓ ଜ୍ୟାମିତିକ ପ୍ରଗ୍ରେସନର ବ୍ୟବହାର ବିଷୟରେ ନୂତନ ତଥ୍ୟ ବାହାର କରି ଭାସ୍କରାଚାର୍ଯ୍ୟ ନିଜର ଅଗାଧ ପ୍ରତିଭାର ପରିଚୟ ପ୍ରଦାନ କରିଅଛନ୍ତି ।

ଭାସ୍କରାଚାର୍ଯ୍ୟ ୩୬ ବର୍ଷ ବୟସରେ ୧୧୫୦ ଖ୍ରୀଷ୍ଟାବ୍ଦରେ ଅର୍ଥାତ୍ ୨୦୨୨ ଶତାବ୍ଦରେ ସିଦ୍ଧାନ୍ତ ଶିରୋମଣି ନାମକ ଗଣିତ ରଚନା କରିଥିଲେ । ଆମ୍ଭେମାନେ ଏହି ସିଦ୍ଧାନ୍ତରେ ଉପନୀତ ହେଉଅଛୁଁ ଯେ ପଣ୍ଡିତ ମହାଶୟ ଗଣିତାଧ୍ୟାୟ ରଚନା କଲାପରେ ଲୀଳାବତୀ ଗଣିତର ନାମକରଣ ପରି ସମ୍ବନ୍ଧ ପରିଲକ୍ଷିତ ହୁଏ ।

ବିଶେଷ ଆଲୋଚନା ବିଷୟ ହେଉଛି 'ଲୀଳାବତୀ' ଗଣିତର ଏପରି ନାମକରଣ କରିବାର ପ୍ରୟୋଜନକ କ'ଣ ?

କେତେକଙ୍କ ମତରେ ଭାସ୍କରାଚାର୍ଯ୍ୟ ପଣ୍ଡିତ ତାଙ୍କର ଏକମାତ୍ର ଦୁହିତା ଲୀଳାବତୀର ସ୍ମୃତି ରକ୍ଷା ନିମନ୍ତେ ଗ୍ରନ୍ଥର ନାମଟି ଲୀଳାବତୀ ରଖି ଅଛନ୍ତି । ଅନ୍ୟ କେତେକଙ୍କ ମତରେ ଲୀଳାବତୀ ହେଉଛନ୍ତି ତାଙ୍କର ସ୍ତ୍ରୀ ।

କିନ୍ତୁ ଆମ୍ଭର ଆଲୋଚନାରେ ଲୀଳାବତୀ ବୋଲି କେହି ଜଣେ ରମଣୀ ନଥିଲେ । ଯେପରି କାଳୀଦାସ ଶ୍ରୁତବୋଧ ପୁସ୍ତକଟି ଏକ କଳ୍ପିତ ସ୍ତ୍ରୀକୁ ବୁଝାଇଲା ପରି ଲେଖିଅଛନ୍ତି । ଲୀଳାବତୀ ସେହିପରି ଏକ କଳ୍ପିତାନାମା । ଝିଅ ନୁହନ୍ତି କି ସ୍ତ୍ରୀ ନୁହନ୍ତି । କାରଣ ଅନେକ ସ୍ଥଳରେ ବାଳେ, କୁଟିଳ କୁନ୍ତଳେ, ଇତ୍ୟାଦି ସମ୍ବୋଧନ ଦେଖାଯାଏ । ଅନ୍ୟ କେତେକ ସ୍ଥଳରେ କାନ୍ତେ ପ୍ରିୟେ ଇତ୍ୟାଦି ସମ୍ବୋଧନ ମଧ୍ୟ ପରିଦୃଷ୍ଟ ହୁଏ । ଏଥିରୁ ଲୀଳାବତୀଙ୍କୁ କ'ଣ ବୋଲି କହିବାକୁ ହେବ ? ତେଣୁ ଆମ ମତରେ ଲୀଳାବତୀ ଏକ କଳ୍ପିତ ସ୍ତ୍ରୀ ଭିନ୍ନ ଅନ୍ୟ କିଛି ନୁହେଁ ।

॥ ଇତି ॥

ଲେଖକ

**କବିରାଜ ଶ୍ରୀ ତାରେଶ୍ୱର ଚୌଧୁରୀ**

ଆୟୁର୍ବେଦାଚାର୍ଯ୍ୟ

ଗ୍ରା. ପୋ. : ସମ୍ପୁର

ଥାନା : ବୋଲଗଡ଼

ଜିଲ୍ଲା : ପୁରୀ



ଓଁ

## ଶ୍ରୀ ଗଣେଶାୟ ନମଃ

ଅସ୍ୟାଃ କୃତଂ ବହୁଧା ଅନୁଶୀଳନଂ ଚେତ୍
ଭାରେଶ୍ୱରେଣ ଚ ତଥେତି ପ୍ରକାଶନଂ ବୈ
ଜ୍ୟୋତିର୍ବିଦଶ୍ଚ କବିରାଜ ପଦାଙ୍କଧାରୀ
ବିଶ୍ଳେଷଣଂ ଚ ଗଣିତଂ କରବାଣ୍ୟହଂ ଶଂ ॥

ଡଂ ବୃନ୍ଦାରକ ବୃନ୍ଦ ବନ୍ଦିତ ପଦଂ ନତ୍ୱା ମାତଙ୍ଗାନନଂ
ପାଟୀଂ ସଦ୍‌ଗଣିତସ୍ୟବଚ୍ମି ଚତୁର ପ୍ରୀତିପ୍ରଦାଂ ପ୍ରସ୍ଫୁଟାଂ
ସଂକ୍ଷିପ୍ତାକ୍ଷର କୋମଳାମଳ ପଦୈର୍ଲାଳିତ୍ୟ ଲୀଳାବତୀଂ ॥

ଶ୍ରୀ ଭାସ୍କରାଚାର୍ଯ୍ୟ

ଅନୁବାଦ—ଯେଉଁ ଦେବତା ଭକ୍ତମାନଙ୍କର ପ୍ରେମ ଜାତ କରାନ୍ତି, ସେହି ଦେବ ବିଘ୍ନ ବିନାଶନ କରନ୍ତି ବୋଲି ସ୍ମୃତି ଅଛି । ଦେବଗଣ ଯାହାଙ୍କର ଚରଣେ ବନ୍ଦନା କରନ୍ତି ସେହି ଗଜାନନ ଗଣେଶଙ୍କୁ ନମସ୍କାର କରି ଉତ୍ତମ ଗଣିତର ସନ୍ଧିଂସୁ, ଧୀମାନ୍ ଲୋକଙ୍କର ଆନନ୍ଦ ଦାୟିକା, ପରିସ୍ଫୁଟା, ସଂକ୍ଷିପ୍ତାକ୍ଷର କୋମଳ ନିର୍ମଳ ପଦ ସମୂହଦ୍ୱାରା ରଚିତ ଲଳିତ ଲୀଳାବତୀକୁ କହୁଅଛି ।

**ତୌଲ ପରିମାଣ**—୨୦ ବରାଟ କରେ ଏକ କାକଣୀ ।
= ୪ ପଣ = ୧୬ ଦ୍ରମ୍ମ = ୧ ନିଷ୍କ ।
୧ ଗୁଞ୍ଜା = ୧ ଯବ, ୩ ଗୁଞ୍ଜା = ୧ ବଲ୍ଲ = ୮ ରେଣ ।
୧୪ ବଲ୍ଲ = ଏକ ଗଦ୍ୟାଣକ = ଏକ ଧଟକ (ଧଡ଼ା)
= ୪୦ ପଳ = ୮ ଫୁଲ = ୨ ବିଶା

୫ ଗୁଞ୍ଜା = ୧ ମାଷ, ୧୬ ମାଷ = ୧ କର୍ଷ
୪ କର୍ଷ = ୧ ପଳ, ୧ କର୍ଷ ସୁବର୍ଣ୍ଣ = ୧ ସୁବର୍ଣ୍ଣ ।
୮ ଯବ = ୧ ଅଙ୍ଗୁଳ, ୨୪ ଅଙ୍ଗୁଳ = ୧ ହସ୍ତ
୪ ହସ୍ତ = ୧ ଦଣ୍ଡା, ୨୦୦୦ ଦଣ୍ଡ = ୧ କ୍ରୋଶ = ୮୦୦୦ ହସ୍ତ ।
୪ କ୍ରୋଶ = ୧ ଯୋଜନ, ୧୦ ହସ୍ତ = ୧ ବଂଶ, ୨୦ ବଂଶ = ୧ ବବର୍ତ୍ତନ, ୪ ହସ୍ତ = ୧ କ୍ଷେଦ ।

ଦୈର୍ଘ୍ୟ ୧ ହସ୍ତ । ପ୍ରସ୍ଥ ୧, ବେଧ ୧ ହସ୍ତ ଲେଖାଏଁ ଥିବା ୧୨ କୋଣ ବିଶିଷ୍ଟ ପିଣ୍ଡକୁ ଏକ ଘନ ହସ୍ତ ବୋଲଯାଏ ।

ଧାନ୍ୟ, ମୁଗ୍‌ଧ ଇତ୍ୟାଦି ଶସ୍ୟ, ଏହି ୧ ଘନହସ୍ତ ପାତ୍ରରେ ପୂର୍ଣ୍ଣ ହେଲେ, ତାହା ଏକ ମାଗଧୀ ଖାରିକା ବୋଲି କୁହାଯାଏ ।

୧୬ ଦ୍ରୋଣ = ୧ ଖାରିକା, ୪ ଆଢ଼କ = ୧ ଦ୍ରୋଣ, ୪ ପ୍ରସ୍ଥ = ୧ ଆଢ଼କ, ୪ କୁଡ଼ବ = ୧ ପ୍ରସ୍ଥ ।

ଆଢ଼କର ଦେଶ ପ୍ରଚଳିତ ଭାଷା—ଅଡ଼ା

ଧଟକର ଦେଶ ପ୍ରଚଳିତ ଭାଷା—ଧଡ଼ା

ପ୍ରାଚୀନ କାଳରେ ଏକପ୍ରସ୍ଥ ଚାଉଳ ବା ଗହମ ସାଧାରଣ ଲୋକର ଖାଦ୍ୟ ଥିଲା ।

ଉଦାହରଣ—"ପ୍ରସ୍ଥମାତ୍ରଂ ନୃପୋ ଭୁଙ୍କ୍ତେ ପ୍ରସ୍ଥ ମାତ୍ରେ-ତରେଜନଃ" ।

ଅର୍ଥାତ୍—ରାଜା ଖାଆନ୍ତି ଏକ ପ୍ରସ୍ଥ ଓ ଇତର ଲୋକ ଖାଏ ଏକ ପ୍ରସ୍ଥ । ଅନ୍ୟ ଏକ ଉଦାହରଣ—ସର୍ବାରମ୍ଭା ତଣ୍ଡୁଳ ପ୍ରସ୍ଥ ମୂଳା ।' ଅର୍ଥାତ୍ ସମସ୍ତ ଉଦ୍ୟମର ମୂଳ ହେଉଛି ଚାଉଳ

ଏକ ପ୍ରଶ୍ନ । ପୁଣି ମଧ୍ୟ 'ଗୃଉଳ ଢ଼'ପୋଷ ହେଲା ମୂଳ । କେଉଁ କଥାରେ କ'ଣ ଅଛି । (ଲୋକ କଥା)

ଗଣିତ ଶାସ୍ତ୍ରରେ ନଅଗୋଟି ସଂଖ୍ୟା ସବୁବେଳେ ବ୍ୟବହୃତ ହୁଏ । ଏକର ଏକ ଗୁଣ ସମାନ ଏକ । ଦୁଇଗୁଣ = ୨, ତିନିଗୁଣ = ୩ ଇତ୍ୟାଦି । ତତ୍ପରେ ୧୦ ଠାରୁ ୧୦ ଗୁଣ, ୧୦ ଗୁଣ = ୧୦୦ (ଶତ) ୧୦୦ର ୧୦ ଗୁଣ = ୧୦୦୦ (ସହସ୍ର) ।

ପ୍ରାଚୀନ ଗାଣିତିକମାନଙ୍କର ଏବଂବିଧ ଗଣନା ଅତି ସହଜ । ତଥା—ଏକଂ ଦଶଂ ଶତଂ ଚୈବ ସହସ୍ରଂ ମଯୁତଂ ତଥା

ଲକ୍ଷଂ ନିୟୁତଂ କୋଟିଶ୍ଚ ଅର୍ବୁଦଂ ବୃନ୍ଦ ମେବଚ ।
ଖର୍ବଂ ନିଖର୍ବଂ ଶଙ୍ଖଶ୍ଚ ପଦ୍ମ ଚ ଜଳଧି ସ୍ତଥା,
ଅନ୍ତ୍ୟ ମଧ୍ୟ ପରାର୍ଦ୍ଧଶ୍ଚ କ୍ରମ ଦଶ ଗୁଣୋ ଭବେତ୍ ।

ଏହିପରି ଅଠର ଗୋଟି ପରିମାଣ ବ୍ୟବହୃତ ହୁଏ । ଗ୍ରହ ଗଣିତରେ ଓ ଖ କକ୍ଷା ମାନରେ ପରାର୍ଦ୍ଧ ପର୍ଯ୍ୟନ୍ତ ତଥା ବ୍ରହ୍ମାଙ୍କ ପରମାୟୁ ଗଣନାରେ ପରାର୍ଦ୍ଧ ପର୍ଯ୍ୟନ୍ତ ଗଣନା କରାଯାଏ ।

ଏହା ପୂର୍ବରୁ ଶୂନ୍ୟ ( ୦ )ର ବ୍ୟବହାର ନଥିଲା । ଭୂପତି ପଣ୍ଡିତ ଶୂନ୍ୟର ବ୍ୟବହାର ଉଦ୍ଭାବନ କରି ପୃଥିବୀର ଏକ ନୂତନ ଅଧ୍ୟାୟ ସୃଷ୍ଟି କଲେ । ତତ୍ପରେ ଶୂନ୍ୟ ବ୍ୟବହାର ଦ୍ୱାରା ୧୦, ୨୦, ୧୦୦, ୧୦୦୦ ଇତ୍ୟାଦି ସଂଖ୍ୟା ଅଙ୍କେଶରେ ଲେଖା ଯାଇପାରିଲା ।

## ଯୋଗ ଓ ବିଯୋଗ

ପ୍ରଶ୍ନ—ଆଗୋ ବୁଦ୍ଧିମତି ଲୀଳାବତି ୨, ୫, ୩୨, ୧୯୩, ୧୮, ୧୦ ଓ ୧୦୦ର ଯୋଗଫଳ ଓ ଏକ ଅୟୁତରୁ ଏହି ଯୋଗଫଳକୁ ବିଯୋଗ କର ।

| | | | |
|---|---|---|---|
| ଯୋଗ— | ୨ | ବିଯୋଗ— | ୧୦୦୦୦ |
| | ୫ | | ୩୬୦ |
| | ୩୨ | ବିଯୋଗ ଫଳ | ୯୬୪୦ |
| | ୧୯୩ | | |
| | ୧୮ | | |
| | ୧୦ | | |
| | ୧୦୦ | | |
| ଯୋଗଫଳ | ୩୬୦ | | |

## ଗୁଣନ

ତତ୍ପରେ ଗୁଣନ ବିଧି । ଯାହାକୁ ଗୁଣିବାକୁ ହେବ, ସେ ସଂଖ୍ୟା ଗୁଣ୍ୟ । ଯାହାଦ୍ୱାରା ଗୁଣାଯାଏ ତାହା ଗୁଣକ । ଯାହା ଫଳ ପଡ଼େ ତାହା ଗୁଣଫଳ ।

ଅଙ୍କାନାଂ ବାମତୋ ଗତିଃ ।

ଯଥା—୧୩୫ ହେଲା ଗୁଣ୍ୟ । ଏହାର ବାମଭାଗରେ ଥିବା ୧ ହେଲା ଶତ, ତତ୍ପରେ ୩ ହେଲା ଦଶ ଓ ୫ ହେଲା ଏକକ, ୧୩୫କୁ ୧୨ରେ ଗୁଣନ କର ।

୧୩୫ = ଗୁଣ୍ୟ
୧୨ = ଗୁଣକ

୧୨ × ୧ = ୧୨ ଶତ
୧୨ × ୩ = ୩୬ ଦଶ
୧୨ × ୫ = ୬୦ ଏକକ

ଅତଏବ ଗୁଣଫଳ = ୧୨୦୦ (୧୨ ଶତ)
୩୬୦ (୩୬ ଦଶ)
୬୦ (୬୦ ଏକକ)

୧୬୨୦ ଗୁଣଫଳ

## ଖଣ୍ଡ ଗୁଣନ

୧୨ କୁ ଦୁଇଖଣ୍ଡ କର = ୭ + ୫
ତତ୍ପରେ ୧୩୫ × ୭ = ୯୪୫
ପୁଣି ୧୩୫ × ୫ = ୬୭୫

ଗୁଣଫଳ ୧୩୫ର ୧୨ ଗୁଣ = ୧୬୨୦

## ଅପବର୍ତ୍ତନ ଗୁଣନ

୧୩୫ର ୧୨ ଗୁଣ, ୧୩୫ର ୨୦ ଗୁଣରୁ ୧୩୫ ର ୮ ଗୁଣ ବିୟୋଗ କଲେ ଫଳ ସିଦ୍ଧି ହୁଏ ।

ଯଥା—୧୩୫ × ୨୦ = ୨୭୦୦
୧୫୩ ର ୮ ଗୁଣ = ୧୩୫ × ୮ = ୧୦୮୦

୧୩୫ର ୨୦ ଗୁଣରୁ ୧୫୩ର ୮ ଗୁଣ ବିୟୋଗ କଲେ = ୧୩୫ର (୨୦—୮) ୧୨ ଗୁଣ । ୨୭୦୦—୧୦୮୦ = ୧୬୨୦ ।

# ଗୁଣନ ଫଳ ପରୀକ୍ଷା

୧୩୫ × ୧୨ = ୧୬୨୦, ୧୬୨୦କୁ ୧୨ରେ ଭାଗକଲେ
୧୬୨୦ ÷ ୧୨ = ୧୩୫ ହେଲା ଭାଗଫଳ ।

୧୨
———
୪୨
୩୬
———
୬୦
୬୦
———
୦

∴ ଗୁଣନ ଠିକ୍ ଅଛି ।

ତତ୍ପରେ ୧୨ = ୩ × ୪

ଗୁଣଫଳକୁ ୩ରେ ଭାଗକର ଭାଗଫଳକୁ ୪ ରେ ଭାଗ କଲେ ଗୁଣ୍ୟର ପରମାଣ ଆସିବ ।

ଯଥା— ୧୬୨୦ ÷ ୩ = ୫୪୦

୧୫
———
୧୨
୧୨
———
୦

୪) ୫୪୦ (୧୩୫
୪
———
୧୪
୧୨
———
୨୦
୨୦
———
୦

∴ ଗୁଣନ ଠିକ୍ ଅଛି ।

## ବର୍ଗ

ସମାନ ସମାନ ଅଙ୍କର ଗୁଣଫଳକୁ ବର୍ଗ ବା କୃତି କହନ୍ତି ।

ଯଥା—୯ର ବର୍ଗ = ୯ × ୯ = ୮୧

୧୪ର ବର୍ଗ = ୧୪ × ୧୪ = ୧୯୬

୨୯୭ର ବର୍ଗ = ୨୯୭ × ୨୯୭ = ୮୮୨୦୯

ପୁଣି ୧୦୦୦୫ର ବର୍ଗ = ୧୦୦୦୫ × ୧୦୦୦୫

= ୧୦୦୧୦୦୦୨୫

ଅନ୍ୟ ଏକ ବିଶେଷ ସୂତ୍ର—ଯେଉଁ ଅଙ୍କର ଅନ୍ତ୍ୟ ଅଙ୍କ ୫ ହୋଇଥିବ, ସେହି ସଂଖ୍ୟାର ବର୍ଗ = ୫$^{୨}$ = ୨୫ ୧୫ର ବର୍ଗ = ୫ର ବର୍ଗ ଓ ତା ବାମପଟେ ୧ × ୨ = ୨ ∴ ୨୨୫, ଅର୍ଥାତ୍ ୫ର ବର୍ଗ ଡାହାଣରେ ରଖି ମୂଳ ସଂଖ୍ୟାରେ ଯୋଗଫଳକୁ ଗୁଣି ବାମ ଭାଗରେ ରଖିଦେଲେ ସଂଖ୍ୟାର ବର୍ଗ ହେଲା ଯଥା—

୨୫ର ବର୍ଗ = ପ୍ରଥମେ ୫ର ବର୍ଗ = ୨୫

ଭାଗ ଭାଗ ସଂଖ୍ୟା ୨କୁ (୧ + ୧)ରେ ଗୁଣି ବାମ ଭାଗରେ ରଖ ।

(୨ × ୩) ୨୫ = ୬୨୫ = ୨୫ର ବର୍ଗ

୩୫ର ବର୍ଗ — ୩ × (୩ + ୧) ୨୫ = ୧୨୨୫

ଏହିପରି ସୁଗମ ଉପାୟରେ ବର୍ଗ ନିର୍ଣ୍ଣୟ କରିବ ।

## ଭାଗ ବା ହରଣ

୨୬୪୫ କୁ ୧୫ରେ ଭାଗ କର ।

ନ୍ୟାସ—୨୬୪୫ ÷ ୧୫ =

ଅଥବା ନ୍ୟାସ—

୧୫ ) ୨୭୪୫ ( ୧୮୩
୧୫
———
୧୨୪
୧୨୦
———
୪୫
୪୫
———
୦

ଉଲ୍ଲିଖିତ ସାଧନରେ ୨୭୪୫ ହେଲା ଭାଜ୍ୟ, ୧୫ ହେଲା ଭାଜକ । ସାଧନ କରିବା ପରେ ଭାଗଫଳ ହେଲା = ୧୮୩, ଭାଗଶେଷ = ୦, ଅନ୍ୟ ଏକ ଉଦାହରଣ—୭୫୭୩୨୩କୁ ୫୪ରେ ଭାଗ କର ।

ନ୍ୟାସ—୭୫୭୩୨୩ ÷ ୫୪

ଅଥବା ନ୍ୟାସ— ୫୪ ) ୭୫୭୩୨୩ ( ୧୪୦୨୪
୫୪
———
୨୧୭
୨୧୬
———
୧୩୨
୧୦୮
———
୨୪୩
୨୧୬
———
୨୭

ଉକ୍ତ ସାଧନ ପରେ
ଭାଗଫଳ = ୧୪୦୨୪
ଭାଗଶେଷ = ୨୭

## ଭାଗଫଳ ଠିକ୍ ଅଛି କି ନାହିଁ ପରୀକ୍ଷା

ଭାଗଫଳ × ଭାଜକ + ଭାଗଶେଷ = ଭାଜ୍ୟ

୧୪୦୨୪ × ୫୪ + ୨୭ = ୭୫୭୩୨୩

∴ ଭାଗକ୍ରିୟା ସାଧନ ଠିକ୍ ଅଛି ।

## ବର୍ଗ ସମ୍ବନ୍ଧୀୟ କେତେକ ପ୍ରଶ୍ନ

ସୂତ୍ର—ବର୍ଗାନ୍ତରଂ ତୁ ଯୋଗାନ୍ତର ଘାତ ସମଂ ।

ଅର୍ଥ—ଦୁଇଟି ରାଶିର ବର୍ଗର ଫେଡ଼ାଣ ଫଳ ସେହି ଦୁଇ ରାଶିର ଯୋଗଫଳ ଓ ବିୟୋଗ ଫଳର ଗୁଣଫଳ ସଙ୍ଗେ ସମାନ ।

ଦୁଇଟି ରାଶି କଳ୍ପିତ ହେଲା ଯଥା—୧୭ ଓ ୨୫ ଏହି ଦୁଇ ରାଶିର ବର୍ଗର ଅନ୍ତର ଯଥା—

୧୭ର ବର୍ଗ—୧୫ର ବର୍ଗ $= (୧୭^2 — ୧୫^2)$.

ଏହିପରି ବର୍ଗର ଚିହ୍ନ ଲେଖାଯାଏ ।

ସାଧନ—$୧୭^2 = ୨୮୯$ ଓ $୧୫^2 = ୨୨୫$

ଏହି ଦୁଇ ବର୍ଗର ଅନ୍ତର = ୨୮୯—୨୨୫ = ୬୪

ଏହି ଦୁଇ ରାଶିର ଯୋଗଫଳ = ୧୭ + ୧୫ = ୩୨

ଏହି ଦୁଇ ରାଶିର ବିଯୋଗ ଫଳ = ୧୭— ୧୫ = ୨

∴ ୩୨ × ୨ = ୬୪

ଏହାର ଯୁକ୍ତି ଜ୍ୟାମିତି ଦ୍ୱିତୀୟ ଅଧ୍ୟାୟ ଚତୁର୍ବିଂଶତି ପ୍ରତିଜ୍ଞାର ପଞ୍ଚମ କ୍ଷେତ୍ରର ଅନୁମାନରେ ସୁସାଧ୍ୟ । ଇତି ଦିଗ୍‌ଦର୍ଶନ ।

# ବର୍ଗମୂଳ

ସୂତ୍ର—ସଂଖ୍ୟାର ଡାହାଣ ପାଖରୁ ଗୋଟିଏ ଅଙ୍କରେ ଶିରୋବିନ୍ଦୁ ଦିଅ । ତା'ପରେ ଗୋଟିଏ ଗୋଟିଏ ଅଙ୍କ ଛାଡ଼ି ଶିରୋବିନ୍ଦୁ ଦିଅ । ତତ୍ପରେ ବାମ ପାଖର ବିନ୍ଦୁ ପର୍ଯ୍ୟନ୍ତ ସଂଖ୍ୟାରୁ ଯେଉଁ ସଂଖ୍ୟାର ବର୍ଗ ଯାଇପାରିବ ତାହା ନେଇ ଅନ୍ତରର ଡାହାଣ ପାଖକୁ ଭାଜ୍ୟର ଅନ୍ୟ ବିନ୍ଦୁଯାଏ ଥିବା ସଂଖ୍ୟା ଦୁଇଟି ଓହ୍ଲାଅ । ଭାଜକର ଦୁଇଗୁଣକୁ ନୂତନ ଭାଜ୍ୟକର ଭାଗଫଳରେ ଯେଉଁ ଅଙ୍କ ପକାଇବ ତାହା ନୂତନ ଭାଜକର ଡାହାଣରେ ରଖି ଭାଗଫଳରେ ତାକୁ ଗୁଣନ କର । ନୂତନ ଭାଜ୍ୟରୁ ଉକ୍ତ ଗୁଣଫଳକୁ ଅନ୍ତର କର ।

ଏହିପରି ବାରମ୍ବାର ଭାଗ କରିବାରେ ଯାହା ଭାଗଫଳ ହେବ ତାହା ହେଲା ବର୍ଗମୂଳ ।

ଉଦାହରଣ ୧—୮୮୨୦୯ର ବର୍ଗମୂଳ ସ୍ଥିର କର ।

—√ ବର୍ଗମୂଳର ଚିହ୍ନ √୮୮୨୦୯ ଏହା ପ୍ରଶ୍ନ ।

ସାଧନା—

```
  ୨  | ୮୮୨୦୯ | ୨୯୭
  ୨  | ୪
-----  -------
 ୪୯  | ୪୮୨
  ୯  | ୪୪୧
-----  -------
୫୮୭  |  ୪୧୦୯
     |  ୪୧୦୯
     --------
          ୦
```

ଉଦାହରଣ ୨—

ୀ୧୦୦୧୦୦୦୨୫ର ବର୍ଗମୂଳ ସ୍ଥିର କର ।

—$\sqrt{୧୦୦୧୦୦୦୨୫}$ = ?

ସାଧନ—

```
     ୧ | ୧୦୦୧୦୦୦୨୫ | ୧୦୦୦୫
     ୧ | ୧
    ---------------
    ୨୦ | ୦୦
     ୦ | ୦୦
    ---------------
   ୨୦୦ | ୧୦
     ୦ | ୦୦
    ---------------
  ୨୦୦୦ | ୧୦୦୦
       | ୧୦୦୦
    ---------------
 ୨୦୦୦୫ | ୧୦୦୦୨୫
       | ୧୦୦୦୨୫
    ---------------
             ୦
```

ବିଶେଷ ଦ୍ରଷ୍ଟବ୍ୟ—

ଭାଜ୍ୟରେ ଯେତେଗୋଟି ଶିରୋବିନ୍ଦୁ, ଭାଗ ଫଳରେ ସେତିକିଟି ଅଙ୍କ ପଡ଼ିବ ।

ଯଥା—ଉପରୋକ୍ତ ସାଧନରେ ୫ ଗୋଟି ଶିରୋବିନ୍ଦୁ ଓ ଭାଗଫଳରେ ୫ ଗୋଟି ଅଙ୍କ ପଡ଼ୁଛି । ଇତି ଦିଗ୍‌ଦର୍ଶନ । ଅନ୍ୟାନ୍ୟ ବର୍ଗମୂଳ ଗୁଡ଼ିକ ଏପରି ସୁଗମ ଉପାୟରେ ନିର୍ଣ୍ଣୟ କରାଯାଇ ପାରିବ ।

ପୁଣି ମଧ୍ୟ ସାଧାରଣ ଉପାୟରେ ବର୍ଗମୂଳ ସାଧନ କରାଯାଇପାରେ ।

ପ୍ରଶ୍ନ-୮୮୨୦୯ର ବର୍ଗମୂଳ ଉତ୍ପାଦକ ସାହାଯ୍ୟରେ ନିର୍ଣ୍ଣୟ କର ।

ସଂକ୍ଷିପ୍ତରେ— √୮୮୨୦୯

ସାଧନ—

| | |
|---|---|
| ୩ | ୮୮୨୦୯ |
| ୩ | ୨୯୪୦୩ |
| ୩ | ୯୮୦୧ |
| ୩ | ୩୨୬୭ |
| ୩ | ୧୦୮୯ |
| ୩ | ୩୬୩ |
| ୧୧ | ୧୨୧ |
| | ୧୧ |

ଉତ୍ପାଦକ ଗୁଡ଼ିକ ହେଲା = ୩ × ୩ × ୩ × ୩ × ୩ × ୩ × ୧୧ × ୧୧ ଭାଜକର ସମାନ ଦୁଇଟି ସଂଖ୍ୟାରୁ ୧ଟି ସଂଖ୍ୟା ନେଇ ପ୍ରତ୍ୟେକକୁ ଗୁଣି ଫଳ ନିରୂପଣ କରିବ ।

ଯଥା — ପ୍ରଥମ ଦୁଇଟି ୩ରୁ ୩ ×
ଦ୍ୱିତୀୟ ଦୁଇଟି ୩ରୁ ୩ ×
ତୃତୀୟ ଦୁଇଟି ୩ରୁ ୩ ×
୪ର୍ଥ ଦୁଇଟି ୧୧ରୁ ୧୧ = ୩ × ୩ × ୩ × ୧୧ = ୨୯୭

∴ ବର୍ଗମୂଳ = ୨୯୭

# ଘନମୂଳ ନିର୍ଣ୍ଣୟ

ସୂତ୍ର—ଘନମୂଳ ବାହାର କରିବା ନିମନ୍ତେ ଥିବା ସଂଖ୍ୟାର ଦକ୍ଷିଣ ଅଙ୍କରେ ଏକ ବିନ୍ଦୁ ଦେବ। ତତ୍ପରେ ବାମକୁ ଦୁଇଟି ଅଙ୍କ ଛାଡ଼ି ତୃତୀୟ ଅଙ୍କରେ ଶିରୋବିନ୍ଦୁ ଦେବ। ଏହି କ୍ରମରେ ବିନ୍ଦୁ ଦେଇସାରି ବାମ ଦିଗରେ ଥିବା ଶିରୋବିନ୍ଦୁ ସଂଖ୍ୟା ପର୍ଯ୍ୟନ୍ତ ଯେଉଁ ସଂଖ୍ୟାର ଘନ ଯାଇ ପାରିବ ତାହାକୁ ଭାଜକ ଓ ଭାଗଫଳ ରୂପେ ନେଇ ଉଭୟର ଗୁଣଫଳକୁ ଫେଡ଼ିବ। ତତ୍ପରେ ପ୍ରଥମ ଖଣ୍ଡର ବର୍ଗ × ୩ × ଦ୍ୱିତୀୟ ଖଣ୍ଡ + ଦ୍ୱିତୀୟ ଖଣ୍ଡର ବର୍ଗ × ୩ × ପ୍ରଥମ ଖଣ୍ଡ + ଦ୍ୱିତୀୟ ଖଣ୍ଡର ଘନ = ଯାହା ହେବ, ତାହାକୁ ଘନ ସଂଖ୍ୟାରୁ ଅନ୍ତର କରିବ। ଉକ୍ତ ଖଣ୍ଡ ଦ୍ୱୟର ସମଷ୍ଟି ହେଲା ଘନମୂଳ।

ତତ୍ପରେ ଉତ୍ପାଦକ ସାହାଯ୍ୟରେ ଘନମୂଳ ନିର୍ଣ୍ଣୟ କରାଯାଏ। ଏହି ଉପାୟରେ ସହଜରେ ଘନମୂଳ ନିର୍ଣ୍ଣୟ କରାଯାଇ ପାରେ। ଅତଏବ ସର୍ବସାଧାରଣ ଉକ୍ତ "ଉତ୍ପାଦକ ସାହାଯ୍ୟରେ ଘନମୂଳ ନିର୍ଣ୍ଣୟ ପନ୍ଥା ଅନୁସରଣ କରିବା ଉଚିତ।

ଭାଗକ୍ରିୟା ଘନମୂଳର ଉଦାହରଣ—

$\sqrt{\overline{୧୯୬୮୩}}$ = ? ର ଘନମୂଳ ନିର୍ଣ୍ଣୟ କର।

୨)୧୯୬୮୩(୨
୮
———
୧୧୬୮୩

| | |
|---|---|
| $୨^{୨} \times ୩ \times ୧୦୦ \times ୭$ | ୮୪୦୦ |
| $୩ \times ୭^{୨} \times ୨୦$ | ୨୯୪୦ |
| $୭^{୨} \times ୭$ | ୩୪୩ |
| | ୧୧୬୮୩ |

ଉଦାହରଣ—୨

| | |
|---|---|
| ୩ | ୧୯୬୮୩ |
| ୩ | ୬୫୬୧ |
| ୩ | ୨୧୮୭ |
| ୩ | ୭୨୯ |
| ୩ | ୨୪୩ |
| ୩ | ୮୧ |
| ୩ | ୨୭ |
| ୩ | ୯ |
| | ୩ |

ଉତ୍ପାଦକ ଗୁଡ଼ିକ ହେଲା = ୩ × ୩ × ୩ × ୩ × ୩ × ୩ × ୩ × ୩ × ୩

ଘନମୂଳ ବାହାର କଲାବେଳେ ପ୍ରତି ତିନିଗୋଟି ୩ରୁ ୧ଟି ୩ ନଆସିବ ।

∴ ନିର୍ଣ୍ଣେୟ ଘନମୂଳ = ୩ × ୩ × ୩ = ୨୭

ଇତି ଅମିଶ୍ର ପରିକର୍ମାଷ୍ଟକ ସମାପ୍ତ ।

—o—

# ଭଗ୍ନାଂଶ

ଭଗ୍ନାଂଶରେ ତଳେ ଥିବା ସଂଖ୍ୟାଗୁଡ଼ିକୁ ହର ଓ ଉପରେ ଥିବା ସଂଖ୍ୟା ଗୁଡ଼ିକୁ ଲବ କୁହାଯାଏ ଯଥା—

$\frac{୧}{୩}$, $\frac{୧}{୧୫}$

ଏହି ଭଗ୍ନାଂଶ ଦୁଇଟିରେ ତଳେ ଥିବା ୩ ଓ ୧୫ ଦ୍ୱୟ ହର ଏବଂ ଉପରେ ଥିବା ସଂଖ୍ୟା ଦ୍ୱୟକୁ (୧ ଓ ୧କୁ) ଲବ କୁହାଯାଏ । ତତ୍ପରେ ଭଗ୍ନାଂଶ କେତେ ପ୍ରକାର ବିଭକ୍ତ କରାଯାଉ ।

୧ – ସାଧାରଣ ଭଗ୍ନାଂଶ ବା ପ୍ରକୃତ ଭଗ୍ନାଂଶ, ୨—ଅପ୍ରକୃତ ଭଗ୍ନାଂଶ, ୩—ମିଶ୍ର ଭଗ୍ନାଂଶ ।

ପ୍ରକୃତ ଭଗ୍ନାଂଶ ଯଥା—$\frac{୧}{୩}$, $\frac{୧}{୨}$, $\frac{୧}{୬}$ ଇତ୍ୟାଦି ।

ଯେଉଁ ଭଗ୍ନାଂଶର ଲବ ହର ଅପେକ୍ଷା ଶ୍ରେଷ୍ଠ ତାହା ପ୍ରକୃତ ଭଗ୍ନାଂଶ ।

ଅପ୍ରକୃତ ଭଗ୍ନାଂଶ, ଯଥା—$\frac{୫}{୩}$, $\frac{୬}{୪}$, $\frac{୧୧}{୩}$ ଇତ୍ୟାଦି ।

ଯେଉଁ ଭଗ୍ନାଂଶରେ ଲବ, ହର ଅପେକ୍ଷା ବଡ଼ଥାଏ ତାହାକୁ ଅପ୍ରକୃତ ଭଗ୍ନାଂଶ କୁହାଯାଏ ।

ମିଶ୍ର ଭଗ୍ନାଂଶ ଯଥା—

$୧\frac{୨}{୩}$, $୩\frac{୫}{୬}$ ଇତ୍ୟାଦି । ଯେଉଁ ଭଗ୍ନାଂଶରେ ପୂର୍ଣ୍ଣ ସଂଖ୍ୟା ଓ ପ୍ରକୃତ ଭଗ୍ନାଂଶ ମିଶିକରି ଥାଏ ତାହାକୁ ମିଶ୍ର ଭଗ୍ନାଂଶ କୁହାଯାଏ ।

## ଭଗ୍ନାଂଶର ଯୋଗ ଓ ବିଯୋଗ

ଭଗ୍ନାଂଶର ଯୋଗ ବା ବିଯୋଗ କରିବାକୁ ଥିଲେ ହର-ମାନଙ୍କର ଗୁଣଫଳ ନେଇ ତଦନୁସାରେ ନୂତନ ଭଗ୍ନାଂଶ ଗଢ଼ି ଯୋଗ ବା ବିଯୋଗ ସାଧନ କରିବ ।

ଉଦାହରଣ—୧

$$\frac{୧}{୩} + \frac{୧}{୧୫} = ?$$

ହର ଗୁଡ଼ିକର ଗୁଣଫଳ = ୩ × ୧୫ = ୪୫, ପ୍ରତ୍ୟେକ ଭଗ୍ନାଂଶର ହରକୁ ୪୫ କରାଗଲେ ମିଶାଇବାକୁ ସୁବିଧା ହେବ ।

$$\frac{୧ \times ୧୫}{୩ \times ୧୫} = \frac{୧୫}{୪୫}$$ (ହରକୁ ସମାନ କଲାବେଳେ ହରକୁ ଯେଉଁ ସଂଖ୍ୟାରେ ଗୁଣିବ, ଲବକୁ ସେହି ସଂଖ୍ୟାରେ ଗୁଣଲେ ଭଗ୍ନାଂଶର ମୂଲ୍ୟ ଅପରିବର୍ତ୍ତିତ ରହେ) ।

$$\frac{୧ \times ୩}{୧୫ \times ୩} = \frac{୩}{୪୫}$$

$$\frac{୧୫}{୪୫} + \frac{୩}{୪୫} = \frac{୧୫ + ୩}{୪୫} = \frac{୧୮}{୪୫}$$

ଅଥବା—

ହର ଗୁଡ଼ିକର ଲଘିଷ୍ଠ ସାଧାରଣ ଗୁଣିତକ ବା ସଂକ୍ଷେପରେ ଲ.ସା.ଗୁ. ନେଇ ସାଧାରଣ ହର ନିର୍ଣ୍ଣୟ କରିବା ସୁବିଧାଜନକ ।

ଲ.ସା.ଗୁ. ନିର୍ଣ୍ଣୟ ପ୍ରଣାଳୀ—

ଓ | ଓ, ୧୫

ଉତ୍ପାଦକଗୁଡ଼ିକୁ ଗୁଣାଯିବ = ଓ × ୧ × ୫ = ୧୫

$\frac{୧}{ଓ}$ ଏହି ଭଗ୍ନାଂଶର ହରକୁ ୧୫ କରାଯାଉ ।

$\frac{୧ \times ୫}{ଓ \times ୫} = \frac{୫}{୧୫}$

$\frac{୫}{୧୫} + \frac{୧}{୧୫} = \frac{୫ + ୧}{୧୫} = \frac{୬}{୧୫}$

ପୂର୍ବୋକ୍ତ ପ୍ରଣାଳୀରେ ଯୋଗଫଳ $\frac{୧୮}{୪୫}$, $\frac{୧୮}{୪୫}$ କୁ ଲଘିଷ୍ଠ କରାଯାଉ ।

ଭଗ୍ନାଂଶକୁ ଲଘିଷ୍ଠ ଆକାର କଲାବେଳେ ହର ଓ ଲବ ଉଭୟ ଯେଉଁ ବୃହତ୍ତମ ସଂଖ୍ୟା ଦ୍ୱାରା ଭାଗ ହୋଇପାରିବ, ତଦ୍ୱାରା ଭାଗ କରିବ, ଯଥା—

$\frac{୧୮ \div ୯}{୪୫ \div ୯} = \frac{୨}{୫}$ ତଥା $\frac{୬ \div ଓ}{୧୫ \div ଓ} = \frac{୨}{୫}$

ଉଦାହରଣ—୨

$\frac{୧}{୧୪} - \frac{୧}{୬ଓ} = ?$

$$୭ \,|\, \underline{୧୪,\ ୬୩} \quad \text{ଲ. ସା. ଗୁ.} = ୭ \times ୨ \times ୯ = ୧୨୬$$
$$\quad ୨,\ ୯$$

$$\frac{୧ \times ୯}{୧୪ \times ୯} = \frac{୯}{୧୨୬}, \quad \frac{୧ \times ୨}{୬୩ \times ୨} = \frac{୨}{୧୨୬}$$

$$\frac{୯}{୧୨୬} - \frac{୨}{୧୨୬} = \frac{୯ - ୨}{୧୨୬} = \frac{୭}{୧୨୬}$$

$$\frac{୭}{୧୨୬} \text{କୁ ଲଘିଷ୍ଠ କଲେ} = \frac{୭ \div ୭}{୧୨୬ \div ୭} = \frac{୧}{୧୮}$$

ଇତି ଭାଗଜାତି ।



**ପ୍ରଭାଗ ଜାତି—**

ଜଣେ ଧନୀ ବ୍ୟକ୍ତି ୧ ଦ୍ରମ୍ମ, $\frac{୧}{୨}$ ଦ୍ରମ୍ମ, $\frac{୩}{୪}$ ଦ୍ରମ୍ମ, $\frac{୧}{୫}$ ଦ୍ରମ୍ମ, $\frac{୧}{୧୬}$ ଦ୍ରମ୍ମ ଓ $\frac{୧}{୪}$ ଦ୍ରମ୍ମ ବ୍ୟୟ କଲେ, ସମୁଦାୟ ମିଶି କେତେ ଦ୍ରମ୍ମ ହେଲା ?

ନ୍ୟାସ—

$$୧ + \frac{୧}{୨} + \frac{୩}{୪} + \frac{୧}{୫} + \frac{୧}{୧୬} + \frac{୧}{୪} = ?$$

ସାଧନ—୨, ୪, ୫, ୧୬, ୪ର ଲ. ସା. ଗୁ.

```
୨ | ୨, ୪, ୫, ୧୬, ୪
  ----------------
୨ | ୧, ୨, ୫, ୮, ୨
  ----------------
    ୧, ୧, ୫, ୪, ୧
```

୧ × ୧ × ୧ × ୨ × ୨ × ୫ × ୪ = ୮୦

$$\frac{୮୦ + ୪୦ + ୬୦ + ୧୬ + ୫ + ୨୦}{୮୦} = \frac{୨୨୧}{୮୦}$$ ପ୍ରଶ୍ନ

ବା $୨\frac{୬୧}{୮୦}$ ପ୍ରଶ୍ନ

## ମିଶ୍ର ଭଗ୍ନାଂଶ

ପ୍ରଶ୍ନ— $୨\frac{୧}{୪} = \frac{୨ \times ୪ + ୧}{୪} = \frac{୯}{୪}$

$୨ - \frac{୧}{୪} = \frac{୨ \times ୪ - ୧}{୪} = \frac{୭}{୪}$

ଅନ୍ୟ ଏକ ଉଦାହରଣ—

$$\frac{୧}{୪} + \frac{୧}{୩} + \frac{୧}{୨} = \frac{୩ + ୪ + ୬}{୧୨} = \frac{୧୩}{୧୨} = ୧ + \frac{୧}{୧୨}$$

$$\frac{୧}{୩} - \frac{୧}{୮} - \frac{୩}{୭} = \frac{୫୬ - ୨୧ - ୭୨}{୧୬୮} = \frac{୩୭}{୧୬୮}$$

$$\frac{୧}{୨} - \frac{୧}{୮} + \frac{୭}{୯} = \frac{୩୬ - ୯ + ୫୬}{୭୨} = \frac{୮୩}{୭୨}$$

$$= ୧\frac{୧୧}{୭୨}$$

ଇତି ଭଗ୍ନାଂଶର ଯୋଗ ବିଯୋଗ ।

## ଭଗ୍ନାଂଶର ଗୁଣନ

ସୂତ୍ର—ଭଗ୍ନାଂଶର ଗୁଣନରେ ଲବ ଗୁଡ଼ିକର ଗୁଣଫଳକୁ ଲବ ରୂପେ ଓ ହର ଗୁଡ଼ିକର ଗୁଣଫଳକୁ ହର ରୂପେ ସ୍ଥାପନ କଲେ ଗୁଣଫଳ ସିଦ୍ଧ ହେବ ।

ପ୍ରଶ୍ନ—

$$\frac{୭}{୨} \times \frac{୧୫}{୭} = \frac{୧୦୫}{୧୪} = ୭ + \frac{୧}{୨} = ୭ + \frac{୧}{୨}$$

$$\text{ବା } ୭\frac{୧}{୨}$$

## ଭଗ୍ନାଂଶର ହରଣ

ସୂତ୍ର—ଭଗ୍ନାଂଶ ହରଣରେ ଭାଜକକୁ ଓଲଟାଇ ଭାଜ୍ୟ ସହ ଗୁଣନ କଲେ ଭଗ୍ନାଂଶର ହରଣ ହେଲା ।

ଉଦାହରଣ—୧

$\frac{୨}{୩}$ କୁ $\frac{୧}{୫}$ ରେ ହରଣ କର ।

ନ୍ୟାସ—

$$\frac{୨}{୩} \div \frac{୧}{୫} = ?$$

ସାଧନ –

$$\frac{୨}{୩} \times \frac{୫}{୧} = \frac{୧୦}{୩}$$ ଭାଗଫଳ

$\frac{୧୩}{୩}$ ଗୋଟିଏ ଅପ୍ରକୃତ ଭଗ୍ନାଂଶ । ଅପ୍ରାକୃତ ଭଗ୍ନାଂଶର ଲବକୁ ହର ଦ୍ୱାରା ଭାଗ କରି ଭାଗଫଳକୁ ରଖି ଭାଗଶେଷକୁ ଲବ ରୂପେ ସ୍ଥାପନ କରି ପୂର୍ବ ହରକୁ ହର ରୂପେ ସ୍ଥାପନ କଲେ ତାହା ମିଶ୍ର ଭଗ୍ନାଂଶ ହୋଇଥାଏ ।

$\frac{୧୦}{୩} = ୧୦ \div ୩$ ଭାଗଶେଷ = ୧

$୩ + \frac{୧}{୩}$ ବା $୩\frac{୧}{୩}$ ଏହା ହେଲା ମିଶ୍ର ଭଗ୍ନାଂଶ ।

ଉଦାହରଣ ୨—

$$\frac{୭}{୩} \div \frac{୧}{୫} = \frac{୭}{୩} \times \frac{୫}{୧} = \frac{୩୫}{୩} = ୧୧\frac{୨}{୩}$$

(ଏଗାର ପୂର୍ଣ୍ଣ ଦୁଇ ବଉକ୍ତ ତିନି)

ଉଦାହରଣ ୩—

$$\frac{୧}{୩} \div \frac{୧}{୬} = \frac{୧}{୩} \times \frac{୬}{୧} = \frac{୬}{୩} = ୨$$

ଇତି ଭାଗ ହାର ।

# ଭଗ୍ନାଂଶର ବର୍ଗ

ଭଗ୍ନାଂଶରେ $\frac{\text{ଲବର ବର୍ଗ}}{\text{ହରର ବର୍ଗ}}$ = ଭଗ୍ନାଂର ବର୍ଗ

ତଥା $\frac{\text{ଲବର ଘନ}}{\text{ହରର ଘନ}}$ = ଭଗ୍ନାଂଶର ଘନ

୧—

ନ୍ୟାସ— $\text{୩}\frac{\text{୧}}{\text{୨}}$ ର ବର୍ଗ ନିର୍ଣ୍ଣୟ କର।

$$\text{୩}\frac{\text{୧}}{\text{୨}} = \frac{\text{୭}}{\text{୨}} \therefore \frac{\text{୭}}{\text{୨}} \times \frac{\text{୭}}{\text{୨}} = \frac{\text{୪୯}}{\text{୪}} = \text{୧୨}\frac{\text{୧}}{\text{୪}}$$

୨— $\frac{\text{୭}}{\text{୨}}$ ର ଘନ ନିରୂପଣ କର।

$$\frac{\text{୭}}{\text{୨}} \times \frac{\text{୭}}{\text{୨}} \times \frac{\text{୭}}{\text{୨}} = \frac{\text{୩୪୩}}{\text{୮}} = \text{୪୨}\frac{\text{୭}}{\text{୮}}$$

୩— $\frac{\text{୪୯}}{\text{୪}}$ ର ବର୍ଗମୂଳ $= \frac{\sqrt{\text{୪୯}}}{\sqrt{\text{୪}}} = \frac{\text{୭}}{\text{୨}} = \text{୩}\frac{\text{୧}}{\text{୨}}$

୪—

$$\frac{\sqrt[\text{୩}]{\text{୩୪୩}}}{\sqrt[\text{୩}]{\text{୮}}} = \frac{\text{୭}}{\text{୨}} = \text{୩}\frac{\text{୧}}{\text{୨}}$$

ଇତି ଭଗ୍ନାଂଶର ବର୍ଗ ଓ ଘନ ପରିକର୍ମାଷ୍ଟକ ସମାପ୍ତ।

—୦—

# ଶୂନ୍ୟ ପରିକର୍ମ

ଶୂନ୍ୟ ସହିତ ଯାହା ଯୋଗ କରିବ, ତାହା ହେବ

ଯଥା—୦ + ୫ = ୫, ୦ + ୩ = ୩

ଶୂନ୍ୟରୁ ଯାହା ବିୟୋଗ କରିବ ଫଳ ସେହି ରାଶି (ବିୟୋଗାତ୍ମକ) ହେବ ।

ଯଥା—୦ — ୭ = —୭ — ୦ — ୩ = —୩

ଯେଉଁ ରାଶିକୁ ଶୂନ୍ୟ ବିୟୋଗ କରିବ ସେହି ରାଶି ହେବ

ଯଥା—୬ — ୦ = ୬   ୪ — ୦ = ୪

ଯେଉଁ ରାଶିକୁ ଶୂନ୍ୟରେ ଗୁଣିବ ଗୁଣଫଳ ଶୂନ୍ୟ ହେବ । ଅଥବା ଶୂନ୍ୟକୁ ଯେଉଁ ରାଶିରେ ଗୁଣିବ ଗୁଣଫଳ ଶୂନ୍ୟ ହେବ । ଯଥା—୭ × ୦ = ୦,   ୯ × ୦ = ୦,   ୦ × ୬ = ୦

ଯେଉଁ ରାଶିକୁ ଶୂନ୍ୟରେ ଭାଗ କରିବ ତାହାର ଭାଗଫଳ (୦) ହେବ । ଏହାର ପରିମାଣ ଅନନ୍ତ । ଉକ୍ତ ରାଶିକୁ ଖହର କୁହାଯାଏ । ଇଂରାଜୀରେ ଏହାକୁ (infinet) ଇନ୍‌ଫାଇନେଟ କୁହାଯାଏ ।

ଯଥା—୫ ÷ ୦ = ୦୦ (ଖହର)

ଶୂନ୍ୟର ବର୍ଗ = ୦² = ୦

ଘନ = ୦³ = ୦

୦ ର ବର୍ଗମୂଳ = $-\sqrt{୦}$ = ୦

୦ ର ଘନମୂଳ = $-\sqrt[୩]{୦}$ = ୦

ପ୍ରଶ୍ନ—ଏକ ଅଜ୍ଞାତ ରାଶିକୁ ଶୂନ୍ୟରେ ଗୁଣି ସେଥିରେ $\frac{୧}{୨}$ ଯୋଗ କରି ୩ରେ ଗୁଣିରେ ୦ରେ ହରିଲେ ଫଳ ୬୩ ହେବ ?

ଅଜ୍ଞାତ ରାଶି ସ୍ଥିର କର । ବିଲୋମ ବିଧିରେ କମ୍ବା ଇଷ୍ଟ କର୍ମରେ ଲବ୍ଧ ୧୪ । ଏହିପରି ଗଣିତ ଗ୍ରହ ଗଣିତରେ ବିଶେଷ ଆବଶ୍ୟକ ।

କଳ୍ପିତ ହେଲା ଅଜ୍ଞାତ ରାଶି = ଅ

$\frac{୬୩}{୦}$ (ହର ଶୂନ୍ୟ)

ଗୁଣକ = ୩, $\frac{୬୩}{୩}$ = ୨୧

ଅ + $\frac{୧}{୨}$ = ୨୧ $\frac{୩ଅ}{୨}$ = ୨୧

ଅ = $\frac{୨୧ \times ୨}{୩}$ = $\frac{୪୨}{୩}$ = ୧୪

ସରଳ ଉଦାହରଣ—କେଉଁ ରାଶିକୁ ୫ରେ ହରି, ଭାଗଫଳକୁ ୪ରେ ଗୁଣି, ଗୁଣଫଳରୁ ୧୨ ବିଯୋଗ କରି ବିଯୋଗ ଫଳରେ ୩ ଯୋଗକରିବାରୁ ଯୋଗଫଳ ୧୧ ହେଲା । ଅଜ୍ଞାତ ରାଶି ସ୍ଥିର କର ।

ଉକ୍ତ ଗଣିତଟି ଶେଷରୁ ଅର୍ଥାତ୍ ଦୃଶ୍ୟ ସ୍ଥାନରୁ ସାଧନ ଆରମ୍ଭ କର୍ଯାଏ ।

ସାଧନ—୩' ଯୋଗ କରିବାରୁ ୧୧ ହେଲା ।

∴ ୧୧—୩ = ୮, କେଉଁ ସଂଖ୍ୟାରୁ ୧୨ ବିଯୋଗ କଲେ ୮ ହେବ ।

= ୧୨ + ୮ = ୨୦

କେଉଁ ସଂଖ୍ୟାକୁ ୪ରେ ଗୁଣିବାରୁ ୨୦ ହେଲା ।

୨୦ ÷ ୪ = ୫, କେଉଁ ସଂଖ୍ୟାକୁ ୫ରେ ଭାଗ କରିବାରୁ ୫ ହେଲା = ୫ × ୫ = ୨୫ = ଅଜ୍ଞାତ ରାଶି ।

ଖହରର ମାନ ନିର୍ଣ୍ଣୟ ନିମନ୍ତେ କଳ୍ପିତ ହେଲା—$\frac{0}{0}$, $\frac{0}{0}$ର ମୂଲ୍ୟ କେଉଁଠାରେ ଶୂନ୍ୟ ଓ କେଉଁଠାରେ ଅନନ୍ତ । ଏହାର ଜ୍ଞାନ ନିମନ୍ତେ କଳ୍ପିତ ହେଲା କୌଣସି ଏକ ଭଗ୍ନାଂଶ ଅ(ଯା) । ଏଥିରେ ଅ, କ, ଯା ର ଫଳ ଭିନ୍ନ ଭିନ୍ନ ହେବ । ଯଦି ଯା = ଗ ତେବେ ଅ (ଯା) = ୦ ଏବଂ କ (ଯା) = କ(ଗ) ୦ ।

ଇତି ଚଳ ଗଣିତ ସିଦ୍ଧ ହେଲା ।



## ବ୍ୟସ୍ତ ବିଧି

ସୂତ୍ର—ବିଲୋମ ବିଧିରେ ହରଣକୁ ଗୁଣନ, ଗୁଣନକୁ ହରଣ, ବର୍ଗରେ ବର୍ଗମୂଳ । ବର୍ଗମୂଳରେ ବର୍ଗ । ଋଣ (ବିଯୋଗ)

ସ୍ଥାନରେ ଯୋଗ, ଯୋଗ ସ୍ଥାନରେ ବିଯୋଗ ସ୍ଥାପନ କରି ଅଜ୍ଞାତ ରାଶିକୁ ଜାଣିବ ।

ତତ୍ପରେ ଭଗ୍ନାଂଶରେ ଲବକୁ ହର ଓ ହରକୁ ଲବ ରୂପରେ ରଖି ସାଧନ କରାଯିବ ।

ପ୍ରଶ୍ନ—କେଉଁ ସଂଖ୍ୟାକୁ ୩ରେ ଗୁଣି, ଗୁଣଫଳରେ ସେହି ସଂଖ୍ୟାର $\frac{୩}{୪}$ ଯୋଗକରି ଯୋଗଫଳକୁ ୭ରେ ଭାଗ କରି ଭାଗ ଫଳରୁ ସେହି ସଂଖ୍ୟାର $\frac{୧}{୩}$ ବିଯୋଗ କରି ଅନ୍ତର ଫଳକୁ $\frac{୧}{୩}$ ରେ ଗୁଣି ୫୨ ବିଯୋଗ କରି ଅନ୍ତରର ବର୍ଗମୂଳ ନେଇ ସେଥିରେ ୮ ଯୋଗ କରି ଯୋଗଫଳକୁ ୧୦ରେ ଭାଗ କଲେ ଭାଗଫଳ ୨ ହୁଏ ।

ସାଧନ ନିମନ୍ତେ ନ୍ୟାସ—

୨ × ୧୦ — ୮ = ୧୨ ।

୨

୧୨ + ୧୨ = ୧୯୬

— $\sqrt{୧୯୬}$ = ୧୪ (୧୪ + ୭) ୭ = ୧୪୭ କଲ୍ପିତ ହେଲା

ଅଜ୍ଞାତ ରାଶି = କ।

$\frac{୧୪୭ \times ୪}{୩}$ ୮୪ = ଅଜ୍ଞାତ × ୩

∴ ଅଜ୍ଞାତ ରାଶି = $\frac{୮୪}{୩}$ = ୨୮

ବିପରୀତ ଭାବେ ସାଧନ—

$୨ \times ୧୦ - ୮ = ୧୨ \mid ୧୨^{୨} + ୫୨ = ୧୯୬$

$\sqrt{୧୯୬} = ୧୪, (୧୪ + ୭)୭ = ୧୪୭$

$\frac{୧୪୭ \quad ୪}{୩} = ୮୪ = ୩$

$x = \frac{୮୪}{୩} = ୨୮$

ଇତି ବିଲୋମ ପ୍ରକ୍ରିୟା ।



ଅନ୍ୟ ପ୍ରକାର ଉଦାହରଣ —

ଏକ ଅଜ୍ଞାତ ରାଶିକୁ ୫ରେ ଗୁଣି, ଗୁଣଫଳରେ ୫ ଯୋଗ କର ସମଷ୍ଟିର ବର୍ଗମୂଳକୁ ୮ରେ ଗୁଣି ଗୁଣଫଳରୁ ୧୭ ବିଯୋଗ କର, ଅନ୍ତରକୁ ୯ ଦ୍ୱାରା ଭାଗକର, ଭାଗଫଳର ବର୍ଗରେ ୧ ଯୋଗ କରିବାରୁ ସମଷ୍ଟି ୫୦ ହୁଏ । ଅଜ୍ଞାତ ରାଶି ସ୍ଥିର କର ।

ସୂତ୍ରୋକ୍ତ ବିଧି ଅନୁସାରେ—

$୫୦ - ୧ = ୪୯ \quad \sqrt{୪୯} = ୭$

$$\left((୭ \times ୯ + ୧୭) \div ୮\right)^{୨} = ୧୦^{୨} = ୧୦୦$$

$୧୦୦ - ୫ = ୯୫ \mid ୯୫ \div ୫ = ୧୯$

ଉଦାହରଣ—

କୌଣସି ସଂଖ୍ୟାର $\frac{୧}{୩}$, $\frac{୧}{୫}$, $\frac{୧}{୬}$ ଓ $\frac{୧}{୪}$ ର ସମଷ୍ଟି, ସେହି ରାଶିରୁ ବିଯୋଗ କରିବାରୁ ଅବଶିଷ୍ଟ ୬ ରହେ । ସଂଖ୍ୟାଟି କେତେ ?

ସଂଖ୍ୟାକୁ ୧ ଧରାଯାଉ ।

$$\frac{୧}{୩}+\frac{୧}{୫}+\frac{୧}{୬}+\frac{୧}{୪}=\frac{୨୦+୧୨+୧୦+୧୫}{୬୦}$$

$$=\frac{୫୭}{୬୦}$$

$$୧-\frac{୫୭}{୬୦}=\frac{୬୦-୫୭}{୬୦}=\frac{୧}{୨୦}=\frac{୧}{୨୦}$$

$$\frac{୧}{୨୦}=୬ \qquad ୧=\frac{୬\times୨୦}{୧}=୧୨୦$$

ଉଦାହରଣ—

ଦେଉଳେକ ଥିଲା ସେ ଯେ ବର୍ଣ୍ଣନ ଗଠନ
କ୍ରୋଧଭରେ ଠେଲିଦେଲା ପବନ ନନ୍ଦନ ।
ଅର୍ଦ୍ଧେକ ପଶିଲା ପଙ୍କେ ତୃତୀୟାଂଶ ଜଳେ
ଦଶମ ଭାଗରୁ ଭାଗେ ଶିଉଳର ଜଳେ ।
ଉପରେ ବାଉନ ହାତ ଅଛି ବିଦ୍ୟମାନ
କହ ହେ ସୁବୋଧ ଗୃହ ଦେଉଳ ପ୍ରମାଣ ।

ନ୍ୟାସ—

$$\frac{୧}{୨} + \frac{୧}{୩} + \frac{୧}{୧୦} = \frac{୧୫ + ୧୦ + ୩}{୩୦} = \frac{୨୮}{୩୦}$$

ଅଂଶ ଅଜ୍ଞାତ । ଜ୍ଞାତ = ୫୨ ହାତ ସମୁଦାୟ ଓ ଦେଉଳକୁ ୧ ଧରାଯାଉ ।

$$୧ - \frac{୨୮}{୩୦} = \frac{୩୦ - ୨୦}{୩୦} = \frac{୨}{୩୦}$$ ଅଂଶ ଅବଶିଷ୍ଟ ।

କିନ୍ତୁ ଅବଶିଷ୍ଟ ୫୨ ହାତ ଉପରକୁ ଅଛି ।

$\frac{୨}{୩୦}$ ଅଂଶ = ୫୨ ହାତ ।

ବା $\frac{୧}{୧୫} = \frac{୧}{୧୫}$ ଅଂଶ = ୫୨ ହାତ

$$୧ = \frac{୫୨ \times ୧୫}{୧} = ୭୮୦$$ ହାତ ।

ଉଦାହରଣ—କେତେଗୁଡ଼ିଏ ଭ୍ରମର ଉଡ଼ୁଥିଲେ । ସମୁଦାୟର $\frac{୧}{୫}$ କଦମ୍ବ ବନକୁ, $\frac{୧}{୩}$ ଅଂଶ ଶିଳିନ୍ଧ୍ର ବନକୁ, $\frac{୨}{୫}$ କୁଟଜ ବନକୁ ଗଲେ । ଅନ୍ୟ ଏକ ଭ୍ରମର କେତକୀ ଆଘ୍ରାଣ କରି ଅନ୍ଧ ହୋଇ ମରିଗଲା । ଭ୍ରମର ସଂଖ୍ୟା ସ୍ଥିର କର ।

ନ୍ୟାସ—

$$\frac{୧}{୫} + \frac{୧}{୩} + \frac{୨}{୫} = \frac{୩ + ୫ + ୬}{୧୫} = \frac{୧୪}{୧୫}$$ ଅଂଶ

ଅଜ୍ଞାତ । ଅବଶିଷ୍ଟ ୧ ଜ୍ଞାତ ।

ସମୁଦାୟ ଭ୍ରମରଙ୍କୁ ୧ ଧରାଯାଉ ।

$$୧ - \frac{୧୪}{୧୫} = \frac{୧୫ - ୧୪}{୧୫} = \frac{୧}{୧୫}$$ ଅଂଶ ଅବଶିଷ୍ଟ

$$\frac{୧}{୧୫} = ୧ \qquad ୧ = \frac{୧ \times ୧୫}{୧} = ୧୫$$

ଭ୍ରମର ସଂଖ୍ୟା = ୧୫

ଇତି ଉଦ୍ଦିଷ୍ଟକର୍ମ ।

## ସଂକ୍ରମଣ ଗଣିତ

ଦୁଇଟି ସଂଖ୍ୟାର ଯୋଗଫଳ = ୧୦୧

ସେହି ଦୁଇଟି ସଂଖ୍ୟାର ଅନ୍ତର ଫଳ = ୨୫

ସଂଖ୍ୟା ଦୁଇଟି ସ୍ଥିର କର ।

ନ୍ୟାସ — ୧୦୧ + ୨୫ = ୧୨୬

୧୨୬ ÷ ୨ = ୬୩ ବୃହତ୍ତର ରାଶି ।

୧୦୧ — ୨୫ = ୭୬

୭୬ ÷ ୨ = ୩୮ କ୍ଷୁଦ୍ରତର ରାଶି ।

୨ୟ ଉଦାହରଣ—ଦୁଇଟି ରାଶିର ଅନ୍ତର ୮ । ସେହି ରାଶି ଦୁଇଟିର ବର୍ଗର ଅନ୍ତର—୪୦୦ । ରାଶି ଦୁଇଟି ସ୍ଥିର କର ।

ସୂତ୍ର—ରାଶି ଦୁଇଟିର ସମଷ୍ଟି ଓ ଅନ୍ତରର ଗୁଣଫଳ = ସେହି ରାଶି ଦୁଇଟିର ବର୍ଗର ଅନ୍ତର ।

୪୦୦ ÷ ୮ = ୫୦ = ରାଶି ଦୁଇଟିର ସମଷ୍ଟି

$$\left(\frac{\text{ସମଷ୍ଟି} + \text{ଅନ୍ତର}}{୨}\right) = \text{ବୃହତ୍ତମ ସଂଖ୍ୟା}$$

$$\frac{୫୦ + ୮}{୨} = \frac{୫୮}{୨} = ୨୯ = \text{ବୃହତ୍ତମ ସଂଖ୍ୟା ।}$$

$$\left(\frac{\text{ସମଷ୍ଟି} - \text{ଅନ୍ତର}}{୨}\right) = \text{କ୍ଷୁଦ୍ରତର ସଂଖ୍ୟା}$$

$$\frac{୫୦ - ୮}{୨} = \frac{୪୨}{୨} = ୨୧ = \text{କ୍ଷୁଦ୍ରତର ସଂଖ୍ୟା}$$

—o—

## ଗୁଣନ

ପ୍ରଶ୍ନ—ଏକ ହଂସ ଦଳର ବର୍ଗମୂଳର ଅର୍ଦ୍ଧର ୭ ଗୁଣ ହଂସ ଜଳ କୂଳରେ ବୁଲୁଥିଲେ । ଦୁଇଟି ହଂସ ଜୋଳି କଳହ କରୁଥିଲେ । ହଂସ ସଂଖ୍ୟା ସ୍ଥିର କର ।

ନ୍ୟାସ—

ସମୁଦାୟ ହଂସ ସଂଖ୍ୟାର ବର୍ଗମୂଳର ଅର୍ଦ୍ଧର ୭ଗୁଣ ଜଳ ତୀରରେ । ୨ଟି ହଂସ କେଳିରତ ।

ହଂସ ସଂଖ୍ୟାର ବର୍ଗମୂଳର ଅର୍ଦ୍ଧର ୭ ଗୁଣ

$$= \left(\frac{୭}{୪}\right)^{୨} = \frac{୪୯}{୧୬}$$

$$୨ + \frac{୪୯}{୧୬} = \frac{୮୧}{୧୬}$$

$$\sqrt{\frac{୮୧}{୧୬}} = \frac{୯}{୪} \therefore \frac{୯}{୪} + \frac{୭}{୪} = \frac{୧୬}{୪} = ୪$$

$$ହଂସ\ ସଂଖ୍ୟା = ୪^{୨} = ୧୬$$

ଉଦାହରଣ ୨—

ଏକ ହଂସ ଦଳର ବର୍ଗମୂଳର ୧୦ ଗୁଣ ହଂସ ବର୍ଷା କାଳ ଆରମ୍ଭ ହେବାରୁ ମାନସରୋବରକୁ ଗଲେ । ସମୁଦାୟର $\frac{୧}{୮}$ ଅଂଶ ସ୍ଥଳ ପଦ୍ମବନକୁ ଗଲେ । ଛ' ଗୋଟି ହଂସ ଦେଖାଗଲେ । ସମୁଦାୟ ହଂସ ସଂଖ୍ୟା ସ୍ଥିର କର ।

$$୬ = ସମୁଦାୟ\ ହଂସର\ ବର୍ଗମୂଳ \times ୧୦ + \frac{ସମୁଦାୟ}{୮}\ ସମୁଦାୟ$$

ହଂସକୁ ୧ ଧରାଯାଉ

$$\text{୧} - \frac{\text{୧}}{\text{୮}} = \frac{\text{୭}}{\text{୮}} \text{ । } \frac{\text{୬} \times \text{୮}}{\text{୭}} = \frac{\text{୪୮}}{\text{୭}}$$

$$\frac{\text{୧୦} \times \text{୮}}{\text{୭}} = \frac{\text{୮୦}}{\text{୭}} \text{ । } \frac{\text{୪୮}}{\text{୭}} + \left(\frac{\text{୪୦}}{\text{୭}}\right)^{\text{୨}}$$

$$= \frac{\text{୪୮}}{\text{୭}} + \frac{\text{୧୬୦୦}}{\text{୪୯}} = \frac{\text{୩୩୬} + \text{୧୬୦୦}}{\text{୪୯}}$$

$$= \frac{\text{୧୯୩୬}}{\text{୪୯}} = \left(\text{ହଂସ ସଂଖ୍ୟା} - \frac{\text{୪୦}}{\text{୭}}\right)^{\text{୨}}$$

$$-\sqrt{\frac{\text{୧୯୩୬}}{\text{୪୯}}} = \text{ହଂସ ସଂଖ୍ୟା} - \frac{\text{୪୦}}{\text{୭}}$$

$$\frac{\text{୪୪}}{\text{୭}} = \left(\text{ହଂସ ସଂଖ୍ୟା} - \frac{\text{୪୦}}{\text{୭}}\right)^{\text{୨}}$$

$$\text{ହଂସ ସଂଖ୍ୟା} = \frac{\text{୪୦}}{\text{୭}} + \frac{\text{୪୪}}{\text{୭}} = \frac{\text{୮୪}}{\text{୭}} = \text{୧୨}$$

$$\therefore \text{ ହଂସ ସଂଖ୍ୟା} = \text{୧୨}^{\text{୨}} = \text{୧୪୪}$$

୩ୟ ଉଦାହରଣ—

କର୍ଣ୍ଣାର୍ଜ୍ଜୁନ ଯୁଦ୍ଧରେ ଅର୍ଜ୍ଜୁନ କେତେଗୁଡ଼ିଏ ଶର ପ୍ରୟୋଗ କଲେ । ସମୁଦାୟ ଶରର ଅର୍ଦ୍ଧରେ କର୍ଣ୍ଣଙ୍କର ଶରଗୁଡ଼ିକୁ ଛେଦ କଲେ ସମୁଦାୟ ବର୍ଗମୂଳର ୪ଗୁଣ ଶରରେ କର୍ଣ୍ଣଙ୍କର ରଥର ଅଶ୍ୱମାନଙ୍କୁ ନାଶ କଲେ । ଶଲ୍ୟଙ୍କୁ ୬ ଶର ଛତ୍ରଧ୍ୱଜ ଧନୁକୁ ୩ ଶରରେ ଓ କର୍ଣ୍ଣଙ୍କର ଶିରକୁ ୧ ଶରରେ ଛେଦ କଲେ । ସମୁଦାୟ ଶର ସଂଖ୍ୟା ସ୍ଥିର କର ।

କଳ୍ପିତ ହେଲା—ଶର ସଂଖ୍ୟା $= ଅ^{୨}$

କର୍ଣ୍ଣଙ୍କର ଶରଗୁଡ଼ିକୁ ଛେଦକଲେ $= \frac{ଅ^{୨}}{୨}$

ଘୋଡ଼ାମାନଙ୍କୁ ଛେଦ କଲେ—$\sqrt{ଅ^{୨}}\ ୪$

ଶଲ୍ୟ ପ୍ରଭୃତିଙ୍କୁ ଦୃଶ୍ୟ $= ୬ + ୩ + ୧ = ୧୦$

$$୧୦ = ଅ^{୨} - \frac{ଅ^{୨}}{୨} - \sqrt{ଅ^{୨}}\ ୪$$

କିମ୍ବା $$୧୦ = ଅ^{୨}\left(୧ - \frac{୧}{୨}\right) - \sqrt{ଅ^{୨}}\ ୪$$

କିମ୍ବା $୧୦ \times \frac{୨}{୧} = \cfrac{\cfrac{ଅ^{୨}\ ୧}{୨}}{\cfrac{୧}{୨}} - ୪ଅ \times \frac{୨}{୨}$

କିମ୍ବା $୨୦ = ଅ^{୨} - ୮ଅ$

କିମ୍ବା $୨୦ + ୪^{୨} = ଅ^{୨} - ୮ଅ + ୪^{୨}$

କିମ୍ବା $\sqrt{୩୬} = \sqrt{ଅ^{୨} - ୮ଅ + ୪^{୨}}$

କିମ୍ବା $୬ = ଅ - ୪ \quad \therefore ଅ = ୬ + ୪ = ୧୦$

ସମୁଦାୟ ଶର ସଂଖ୍ୟା $= ୧୦^{୨} = ୧୦୦$

୪ର୍ଥ ଉଦାହରଣ—

ଅଳିକୁଳ ଦଳମୂଳଂ ମାଳତୀ ଯାତ ମଷ୍ଟୌ
ନିଖିଳ ନବମ ଭାଗା ଶ୍ଚାଳିମୀ ଭୃଙ୍ଗ ମେକଂ
ନିଶି ପରିମଳ ଲୁବ୍‌ଧଂ ପଦ୍ମ ମଧ୍ୟେ ନିରୁଦ୍ଧଂ
ପ୍ରତିରଣତି ରଣନ୍ତଂ ବ୍ରୂହିକାନ୍ତେଽଳି ସଂଖ୍ୟାଂ ।

ନ୍ୟାସ—

ଭ୍ରମର ଦଳକୁ $୨ଅ^{୨}$ ବୋଲି ଧରାଯାଉ । ସମୁଦାୟ ଭ୍ରମରର ଅର୍ଦ୍ଧର ବର୍ଗମୂଳ ମାଳତୀବନକୁ ।

$$-\sqrt{\frac{୨ଅ^{୨}}{୨}}=ଅ$$

ସମୁଦାୟ ଭ୍ରମରର ୯ ଭାଗରୁ ୮ ଭାଗ ଭ୍ରମଣ କଲେ

$$୨ଅ^{୨}\frac{୮}{୯}$$

ଗୋଟିଏ ଭ୍ରମର ପଦ୍ମ ମଧ୍ୟରେ ଥିଲା । ରାତ୍ରି ହୋଇଯିବାରୁ ପଦ୍ମଟି ମୁଦ୍ରି ହୋଇଗଲା । ଭ୍ରମରଟି ପଦ୍ମ ମଧ୍ୟରେ ବନ୍ଦୀ ହୋଇ ରହିଗଲା । ତାର ଗୁଞ୍ଜନକୁ ଆଶ୍ରୟ କରି ଆଉ ଏକ ଭ୍ରମର ପଦ୍ମ ଗୁଚ୍ଛପାଖରେ ଗୁଞ୍ଜନ କରି ବୁଲିଲା । ଭ୍ରମର ସଂଖ୍ୟା ସ୍ଥିର କର ।

$$୨ଅ^{୨}-୨ଅ^{୨}\frac{୮}{୯}-ଅ=୧+୧=୨$$

କିମ୍ବା $୧=ଅ^{୨}-ଅ^{୨}\frac{୮}{୯}-\frac{ଅ}{୨}$

କିମ୍ବା $୧=ଅ^{୨}\left(୧-\frac{୮}{୯}\right)-\frac{ଅ}{୨}$

କିମ୍ବା $\frac{୧}{\frac{୧}{୯}}=\frac{ଅ^{୨}\left(୧-\frac{୮}{୯}\right)}{}-\frac{\frac{ଅ}{୨}}{\frac{୧}{୯}}$

କିମ୍ବା $୯ = ଅ^{୨} — ୯ଅ\frac{}{୨}$

କିମ୍ବା $୯ + \left(\frac{୯}{୪}\right)^{୨} = ଅ^{୨} — ଅ\frac{୯}{୨} + \left(\frac{୯}{୪}\right)^{୨}$

କିମ୍ବା $\sqrt{୯ + \frac{୮୧}{୧୬}} = \sqrt{ଅ^{୨} — ଅ\frac{୯}{୨} + \left(\frac{୯}{୪}\right)^{୨}}$

କିମ୍ବା $\sqrt{\frac{୧୪୪ + ୮୧}{୧୬}} = ଅ — \frac{୯}{୪}$

୮ $\sqrt{\frac{୨୨୫}{୧୬}} = ଅ — \frac{୯}{୪}$

$\frac{୧୫}{୪} = ଅ — \frac{୯}{୪}$

$ଅ = \frac{୧୫}{୪} + \frac{୯}{୪} = \frac{୨୪}{୪} = ୬$

ସମୁଦାୟ ଭ୍ରମର ସଂଖ୍ୟା $= ୨ଅ^{୨} = ୨ \times ୬^{୨}$
$= ୨ \times ୩୬ = ୭୨$

୫ମ ଉଦାହରଣ—ଏପରି ଏକ ରାଶି ସ୍ଥିର କର, ଯାହା ସହିତ ତାର ୩ ଭାଗରୁ ଏକ ଭାଗ ଯୋଗ କରି, ସେହି ରାଶିର ବର୍ଗମୂଳର ୧୮ ଗୁଣ ସହ ଯୋଗ କଲେ ସମଷ୍ଟି ୧୨୦୦ ହେବ ।

ନ୍ୟାସ— $ରାଶି + \frac{ରାଶି}{୩} + \sqrt{ରାଶି \times ୧୮} = ୧୨୦୦$

ସାଧନ—ରାଶି = $ଅ^{୨}$ (କଳ୍ପିତ)

$$ଅ^{୨} + \frac{ଅ^{୨}}{୩} + \sqrt{ଅ^{୨}} \times ୧୮ = ୧୨୦୦$$

କିମ୍ବା $୧୨୦୦ = \frac{୪ଅ^{୨}}{୩} + ୧୮ଅ$

କିମ୍ବା $୧୨୦୦ \times \frac{୩}{୪} = \frac{୪}{୩} ଅ^{୨} \times \frac{୩}{୪} + ୧୮ଅ \times \frac{୩}{୪}$

କିମ୍ବା $୯୦୦ = ଅ^{୨} + \frac{୨୭}{୨} ଅ$

କିମ୍ବା $୯୦୦ = ଅ^{୨} + \frac{୨୭}{୨} ଅ$

କିମ୍ବା $୯୦୦ + \left(\frac{୨୭}{୪}\right)^{୨} = ଅ^{୨} + \frac{୨୭}{୨} ଅ \left(\frac{୨୭}{୪}\right)^{୨}$

କିମ୍ବା $\sqrt{୯୦୦ + \left(\frac{୨୭}{୪}\right)^{୨}} = \sqrt{ଅ^{୨} + \frac{୨୭}{୨} ଅ + \left(\frac{୨୭}{୪}\right)^{୨}}$

କିମ୍ବା $\sqrt{\frac{୧୫୧୨୯}{୧୬}} = ଅ + \frac{୨୭}{୪}$

କିମ୍ବା $\frac{୧୨୩}{୪} = ଅ + \frac{୨୭}{୪}$

କିମ୍ବା $ଅ = \frac{୧୨୩}{୪} - \frac{୨୭}{୪} = \frac{୧୨୩ - ୨୭}{୪} = \frac{୯୬}{୪}$

= ୨୪ = ସଂଖ୍ୟାଟି ।

ଇତି ଗୁଣନ କର୍ମ



## ତ୍ରୈରାଶିକ

୧ମ ଉଦାହରଣ—କୁଙ୍କୁମ $୨\frac{୧}{୨}$ କ. ଗ୍ରା. ର ମୂଲ୍ୟ $\frac{୩}{୭}$ ଟଙ୍କା ହେଲେ ୯ ଟଙ୍କାରେ କେତେ କୁଙ୍କୁମ ମିଳିବ ?

ସାଧନ — $\frac{୩}{୭}$ ଟଙ୍କା, $\frac{୫}{୨}$ କ. ଗ୍ରା., ୯ ଟଙ୍କା

$\frac{୩}{୭}$ ଟଙ୍କାରେ $\frac{୫}{୨}$ କ. ଗ୍ରା.

୧ ଟଙ୍କାରେ $= \frac{୫}{୨} \times \frac{୭}{୩} = \frac{୩୫}{୬}$ କ. ଗ୍ରା.

୯ ଟଙ୍କାରେ $= \frac{୩୫}{୬} \times ୯^{୩} = \frac{୧୦୫}{୨}$ କ. ଗ୍ରା.

କିମ୍ବା ୫୨ $\frac{୧}{୨}$ କ. ଗ୍ରା. ବା ୫୨ କ. ଗ୍ରା. ୫୦୦ ଗ୍ରା.

ପୁଣି ସୂତ୍ର— $\frac{୫}{୨} \times ୯ \div \frac{୩}{୭}$ = ଅଜ୍ଞାତ

କିମ୍ବା $\frac{୩}{୭}$ ଟ. $\frac{୫}{୨}$ ୯ ଟ./ଅଜ୍ଞାତ

କିମ୍ବା $\frac{୩}{୭}$ ଟ: $\frac{୫}{୨}$

$$\frac{\text{ମଧ୍ୟ} \times \text{ଅନ୍ତ୍ୟ}}{\text{ଆଦ୍ୟ}} = \text{ଅଜ୍ଞାତ}$$

$$\text{କମ୍ବା}\left(\frac{୫}{୨} \times ୯\right) \div \frac{୩}{୨}$$

$$= \frac{୫}{୨} \times ୯^{୩} \times \frac{୨}{୩} = \frac{୧୦୫}{୨}$$

$$\frac{୧୦୫}{୨} = ୫୨\frac{୧}{୨} \text{ କ. ଗ୍ରା.}$$



## ବ୍ୟସ୍ତ ତ୍ରୈରାଶିକ

ଜୀବାନାଂ ବୟସେ ମୌଲ୍ୟେ ତୌଲ୍ୟେ ବର୍ଣ୍ଣସ୍ୟ ହେମିମଚନ ଭାଗହାରେଚ ରାଶୀନାଂ ବ୍ୟସ୍ତଂ ତ୍ରୈରାଶିକଂ ଭବେତ୍

ସୂତ୍ର—ଇଚ୍ଛା ବୃଦ୍ଧୌ ଫଳେ ହ୍ରାସୋ
ହ୍ରାସେ ବୃଦ୍ଧିଃ ଫଳସ୍ୟ ତୁ
ବ୍ୟସ୍ତଂ ତ୍ରୈରାଶିକଂ ତତ୍ର ଜ୍ଞେୟଂ ଗଣିତ କୋବଦୈଃ

ଉଦାହରଣ—ପ୍ରାପ୍ନୋତି ଚେତ୍ ଷୋଡ଼ଶ ବର୍ଷୀୟା ସ୍ତ୍ରୀ
ଦ୍ୱାତ୍ରିଂଶତଂ ବିଂଶତି ବର୍ଷିକା କିଂ ?
ଦ୍ୱିଧୁବହୋ ନିଷ୍କ ଚତୁଷ୍କ ମୂଷାଃ
ପ୍ରାପ୍ନୋତି ଧୂଃଷଟ୍ କବହସ୍ତଦା କିଂ ?

ନ୍ୟାସ—୧୬ ବର୍ଷିଆ ସ୍ତ୍ରୀ ପାଏ ୩୨ ନିଷ୍କ
୨୦ ବର୍ଷିଆ ସ୍ତ୍ରୀ କେତେ ପାଇବ ?

ସାଧନ—୧୬ ବର୍ଷିଆ = ୩୨

୨୦ ବର୍ଣ୍ଣିଆ = ଅଜ୍ଞାତ

$\therefore \frac{୧୬ \times ୩୨}{୨୦} = ୨୫\frac{୩}{୫}$ ନିଷ୍କ

ଦ୍ୱିତୀୟ ଉଦାହରଣ—୨ ବର୍ଷ ବୁଢ଼ା ବଳଦର ମୂଲ୍ୟ ୬୦ ନିଷ୍କ ହେଲେ ୬ ବର୍ଷ ବୁଢ଼ା ବଳଦର ମୂଲ୍ୟ କେତେ ?

ନ୍ୟାସ—୨ ବର୍ଷ ବଳଦ = ୬୦ ନିଷ୍କ

୬ ବର୍ଷ ବଳଦ = ଅଜ୍ଞାତ

୨ ବର୍ଷ ବୁଢ଼ା ବଳଦର ମୂଲ୍ୟ = ୬୦ ନିଷ୍କ

୧ ବର୍ଷ ବୁଢ଼ା ବଳଦର ମୂଲ୍ୟ = ୧୨୦ ନିଷ୍କ

୬ ବର୍ଷ ବୁଢ଼ା ବଳଦର ମୂଲ୍ୟ = ୧୨୦ ÷ ୬

= ୨୦ ନିଷ୍କ ହେବ ।

୩ୟ ଉଦାହରଣ—୧୦ ବର୍ଣ୍ଣ ସୁବର୍ଣ୍ଣରୁ ୧ ତୋଳା ଓଜନର ମୂଲ୍ୟ ୧୦୦ ଟଙ୍କା ହେଲେ ସେହି ୧୦୦ ଟଙ୍କାରେ ୧୫ ବର୍ଣ୍ଣର ସୁବର୍ଣ୍ଣ କେତେ ମିଳିବ ?

ଦ୍ର.—ବର୍ଣ୍ଣର ଅର୍ଥ ଯେତେଥର ଗଡ଼ା ହୋଇଥିବ । କାରଣ ଥରେ ଗଡ଼ା ହେଲେ ସେଥିରେ ଖାଦ ମିଶି ତାହାର ମୂଲ୍ୟ ହ୍ରାସ ହେବ ।

ନ୍ୟାସ—୧୦ ବର୍ଣ୍ଣ = ୧୦୦ ଟଙ୍କା = ୧ ତୋଳା

୧୫ ବର୍ଣ୍ଣ = ୧୦୦ ଟଙ୍କା = ଅଜ୍ଞାତ ।

ସାଧନ—୧୦ ବର୍ଣ୍ଣ ସୁବର୍ଣ୍ଣର ମୂଲ୍ୟ = ୧୦୦ ଟଙ୍କା

୧ ବର୍ଣ୍ଣ ସୁବର୍ଣ୍ଣର ମୂଲ୍ୟ = ୧୦୦ × ୧୦ = ୧୦୦୦ ଟଙ୍କା

୧୫ ବର୍ଣ୍ଣ ସୁବର୍ଣ୍ଣର ମୂଲ୍ୟ = ୧୦୦୦ ÷ ୧୫ = $\frac{\overset{୨୦୦}{୧୦୦୦}}{\underset{୩}{୧୫}}$

ବା $\frac{୨୦୦}{୩}$ ଟଙ୍କା

୧୫. ବର୍ଣ୍ଣ ସୁବର୍ଣ୍ଣରୁ ୧ ତୋଳା ସୁବର୍ଣ୍ଣର ମୂଲ୍ୟ $\frac{୨୦୦}{୩}$ ଟଙ୍କା

∴ $\frac{୨୦୦}{୩}$ ଟଙ୍କା ମିଳେ ୧ ତୋଳା

୧ ଟଙ୍କା ମିଳେ $\frac{୧/୨୦୦}{୩}$ = ୧ × $\frac{୩}{୨୦୦}$

= $\frac{୩}{୨୦୦}$ ତୋଳା

୧୦୦ ଟଙ୍କାରେ = $\frac{୩}{୨୦୦}$ × ୧୦୦ = $\frac{୩}{୨}$ ତୋଳା

ବା ୧$\frac{୧}{୨}$ ତୋଳା ମିଳବ ।

୪ର୍ଥ ଉଦାହରଣ—୪ ସେରଆ ଗଉଣିରେ ୫୦ ଗଉଣି ଧାନକୁ ୨$\frac{୧}{୨}$ ସେରଆ ଗଉଣିରେ ମାପିଲେ କେତେ ଗଉଣି ହେବ ?

ନ୍ୟାସ —୪ ସେରଆରେ ୫୦ ଗୌଣି

୨$\frac{୧}{୨}$ ସେରଆରେ—ଅଜ୍ଞାତ ।

ସାଧନ—୪ ସେରଆ ଗଉଣିରେ ୫୦ ଗଉଣି

୧ ସେରଆ ଗଉଣିରେ = ୫୦ × ୪ = ୨୦୦ ଗଉଣି

$୨\frac{୧}{୨}$ ବା $\frac{୫}{୨}$ ସେରଆ ଗଉଣିରେ $= ୨୦୦ \div \frac{୫}{୨}$

୪୦

$୨୦୦ \times \frac{୨}{୫} =$ ୮୦ ଗଉଣୀ ହେବ ।

ଇତି ବ୍ୟସ୍ତ ତ୍ରୈରାଶିକ

## ପଞ୍ଚ ରାଶିକ

ପ୍ରଥମ ଉଦାହରଣ—୧ ମାସରେ ୧୦୦ ଟଙ୍କାର ସୁଧ ୫ ଟଙ୍କା ହେଲେ ୧୬ ଟଙ୍କାର ୧ ବର୍ଷରେ କେତେ ସୁଧ ହେବ ?

ଟ ୧୦୦ ଙ୍କାରେ ୧ ମାସକୁ ସୁଧ = ୫ ଟଙ୍କା

ଟ ୧ ଙ୍କାରେ ୧ ମାସକୁ ସୁଧ = ୫/୧୦୦ ଟଙ୍କା

ଟ ୧୬ ଙ୍କାରେ ୧ ମାସକୁ ସୁଧ $= \frac{୫}{୧୦୦} \times ୧୬$

୪

୮

$\frac{୮୦}{୧୦୦} = \frac{୪}{୫}$ ଟଙ୍କା

୧୦

୫

୧ ବର୍ଷ = ୧୨ ମାସ ।

∴ ୧୬ ଟଂକାରେ ୧୨ ମାସକୁ ସୁଧ $= \frac{୪}{୫} \times ୧୨ = \frac{୪୮}{୫}$

$= ୯\frac{୩}{୫}$ ଟଂକା ବା ୯ ଟଂକା ୬୦ ପଇସା ।

# ସପ୍ତ ରାଶିକ

୧ମ ଉଦାହରଣ—ପ୍ରସ୍ଥ ୩ ହାତ, ଦୈର୍ଘ୍ୟ=୮ ହାତ ପାଟ କନା ୧୦୦ ଟଙ୍କାରେ ୮ ଖଣ୍ଡ ମିଳେ । ପ୍ରସ୍ଥ $\frac{୧}{୨}$ ହାତ ଦୈର୍ଘ୍ୟ ୧୧ $\frac{୧}{୨}$ ହାତ ପାଟ ଖଣ୍ଡକର ମୂଲ୍ୟ କେତେ ?

ପ୍ର ୩ ହା × ଦୈ ୮ = ୨୪ ବର୍ଗ ହାତ

୨୪ ବର୍ଗ ହାତ ପାଟ ୮ ଖଣ୍ଡ ମିଳେ

∴ ୨୪ × ୮ = ୧୯୨ ବର୍ଗ ହାତ ପାଟ ମିଳେ ।

ପ୍ର $\frac{୧}{୨}$ ହା × ଦୈ ୧୧ $\frac{୧}{୨}$ ହା = ଦ୍ୱିତୀୟ ପ୍ରକାର ପାଟର ଆୟତନ ।

∴ $\frac{୧}{୨} \times ୨\frac{୩}{୨} = ୨\frac{୩}{୪}$ ବର୍ଗ ହାତ

∴ ୧୯୨ ବର୍ଗ ହାତ ପାଟ ମିଳେ ଟ ୧୦୦ ରେ

୧ ବର୍ଗ ହାତ ପାଟ ମିଳେ = ଟ $\frac{୧୦୦}{୧୯୨}$ ରେ

$\frac{୨୩}{୪}$ ବର୍ଗ ହାତ ପାଟ ମିଳିବ $\frac{\overset{୨୫}{୧୦୦}}{୧୯୨} \times \frac{୨୩}{୪}$

$= \frac{୧୨୫}{୧୯୨}$ ଟଙ୍କାରେ

ଟ $\frac{୫୭୫}{୧୯୨}$ ରେ ୧ ଖଣ୍ଡ ପାଟ ମିଳେ ।

୧ ଖଣ୍ଡ ପାଟର ମୂଲ୍ୟ $= \frac{୫୭୫}{୧୨୨}$ ଟଙ୍କା ବା $\frac{୧୯୧}{୧୯୨}$ ଟଙ୍କା

## ନବ ରାଶିକ

ପ୍ରଥମ ଉଦାହରଣ—୧୨ ଆଙ୍ଗୁଳ ବହଳ, ୧୬ ଆଙ୍ଗୁଳ ପ୍ରସ୍ଥର ଓ ୧୪ ହାତ ଦୀର୍ଘ ପଟାର ମୂଲ୍ୟ ଟ ୧୦୦ ଙ୍କା ହେଲେ ୮ ଆଙ୍ଗୁଳ ବହଳ ୧୨ ଆଙ୍ଗୁଳ ପ୍ରସ୍ଥ ଓ ୧୦ ହାତ ଲମ୍ବ ୧୪ ଖଣ୍ଡ ପଟାର ମୂଲ୍ୟ କେତେ ?

୧୨ × ୧୬ × ୧୪ = ୨୬୮୮ ଘନ ଆଙ୍ଗୁଳ ପଟାର ଆୟତନ

ଜଣା ହେବାକୁ ଥିବା ପଟାର ଆୟତନ

= ୧୨ × ୮ × ୧୦ = ୯୬୦ ଘନାଙ୍ଗୁଳ ଆୟତନ.

୨୬୮୮ ଘନ ଆଙ୍ଗୁଳ ପଟାର ମୂଲ୍ୟ = ୧୦୦ ଟଙ୍କା

୧ ଘନ ଆଙ୍ଗୁଳ ପଟାର ମୂଲ୍ୟ $= \frac{୧୦୦}{୨୬୮୮}$

୧୦
୩୦
୬୦
୧୨୦
୨୪୦

∴ ୯୬୦ ଘନ ଆଙ୍ଗୁଳ ପଟାର ମୂଲ୍ୟ $= \frac{୧୦୦}{୨୬୮୮} \times ୯୬୦$

୧୩୪୪
୬୭୨
୩୩୨. ୧୬୮
୮୪
୪୨
୨୧

$= \frac{୨୫୦}{୭}$ ଟଙ୍କା

୧ ଖଣ୍ଡ ପଟାର ମୂଲ୍ୟ $= \frac{୨୫୦}{୭}$ ଟଙ୍କା

୧୪ ଖଣ୍ଡ ପଟାର ମୂଲ୍ୟ $= \frac{୨୫୦}{୭} \times ୧୪^{୨}$ = ୫୦୦ ଟଙ୍କା



## ଏକାଦଶ ରାଶିକ ଓ ବହୁରାଶିକ

ନ୍ୟାସ— ୧୨ ଆଙ୍ଗୁଳ ବହଳ, ୧୬ ବର୍ଗାଙ୍ଗୁଳ ବିଶିଷ୍ଟ ୧୪ ହାତ ଲମ୍ବ ୩୦ ଖଣ୍ଡ ପଟା ୧ କୋଶ ଦୂରରୁ ବୋହି ଆଣିବାକୁ ଗାଡ଼ି ଭଡ଼ା ୧ ଟଙ୍କା ପଡ଼େ । ତେବେ ୮ ଆଙ୍ଗୁଳ ବହଳ ୧୨ ବର୍ଗାଙ୍ଗୁଳ ବିଶିଷ୍ଟ ଓ ୧୦ ହାତ ଲମ୍ବର ୧୪ ଖଣ୍ଡ ପଟା ୬ କୋଶ ବୋହି ଆଣିବାକୁ ଭଡ଼ା କେତେ ?

| ସାଧନ— ଜ୍ଞାତ — | ଅଜ୍ଞାତ |
| --- | --- |
| ୧୨ | ୮ ଅଜ୍ଞାତ—କେତେ ଟଙ୍କା |
| ୧୬ | ୧୨ |
| ୧୪ | ୧୦ |
| ୩୦ | ୧୪ |
| ୧ | ୬ |
| ଟ ୧ | |

ପ୍ରଥମ ପଟାର ଆୟତନ = ୧୨ × ୧୬ × ୧୪
= ୨୬୮୮ ଘନ ଆଙ୍ଗୁଳ

୩୦ ଖଣ୍ଡ ପଟାର ଆୟତନ = ୨୬୮୮ × ୩୦
= ୮୦୬୪୦ ଘନ ଆଙ୍ଗୁଳ

ଦ୍ୱିତୀୟ ପଟାର ଆୟତନ = ୮ × ୧୨ × ୧୦

= ୯୬୦ ଘନାଙ୍ଗୁଳ

୧୪ ଖଣ୍ଡ ପଟାର ଆୟତନ = ୯୬୦ × ୧୪

= ୧୩୪୪୦ ଘନାଙ୍ଗୁଳ

୮୦୬୪୦ ଘନାଙ୍ଗୁଳ ପଟା ୧ କ୍ରୋଶ

ବହି ନେବାକୁ ଭଡ଼ା ଟ ୧

୧ ଘନାଙ୍ଗୁଳ ପଟା ୧ କ୍ରୋଶ ବୋହି ନେବାକୁ

$= \frac{୧}{୮୦୬୪୦}$ ଟଙ୍କା

୯୬୦ ,, ,, ,, $\frac{୧}{୮୦୬୪୦} \times ୯୬୦^{୧} = \frac{୧}{୮୪}$ ଟଙ୍କା

୮୪

୯୬୦ ,, ,, ୬ କ୍ରୋଶ $= \frac{୧}{୮୪} \times ୬ = \frac{୧}{୧୪}$ ଟଙ୍କା

୧୪



## ରତ୍ନ ମିଶ୍ର ବ୍ୟବହାର

ପ୍ର—ମାଣିକ୍ୟାଷ୍ଟକ ମିନ୍ଦ୍ର ନୀଳ ଦଶକଂ ମୁକ୍ତାଫଳାନାଂ ଶତଂ
ସଦ୍ ବଜ୍ରାଣି ଚ ପଞ୍ଚ ପଞ୍ଚ ରତ୍ନ ବଣିଜାଂ ତେଷାଂ ଚତୁର୍ଣ୍ଣାଂ ଧନଂ
ସଙ୍ଗ ସ୍ନେହ ବଶେନ ତେ ନିଜଧନାଦ ଦତ୍ୱୈକ ମେକଂ ମିଥୋ
ଜାତା ତୁଲ୍ୟ ଧନାଃ ପୃଥଗ୍ ବଦ ସଖେ, ତଦ୍ରତ୍ନ ମୌଲ୍ୟାନି ମେ ।

ନ୍ୟାସ--

ଚାରିଜଣ ବଣିକ ଏକ ସଙ୍ଗେ ବିଦେଶକୁ ଗଲେ । ୧ମ ଜଣକର ମାଣିକ୍ୟ ୮ ଥାନ, ଦ୍ୱିତୀୟର ଇନ୍ଦ୍ରନୀଳ ୧୦ ଥାନ, ଜଣକର ମୁକ୍ତାଫଳ ୧୦୦ ଥାନ ଓ ୪ର୍ଥର ହୀରା ୫ ଥାନ ପରସ୍ପର ନିଜ ରତ୍ନରୁ ପରସ୍ପରଙ୍କୁ ଏକ ଏକ ଥାନ ଦେଲେ । ପରିଶେଷରେ ଦେଖିଲେ ପ୍ରତ୍ୟେକଙ୍କ ପାଖରେ ଥିବା ରତ୍ନର ମୂଲ୍ୟ ସମାନ । ପ୍ରତ୍ୟେକ ରତ୍ନର ମୂଲ୍ୟ କେତେ ?

ସାଧନ—ବଣିକମାନଙ୍କୁ ଯଥାକ୍ରମେ କ, ଖ, ଗ, ଘ, ଧରାଯାଉ

କ'ର ୮ ଥାନରୁ ୪ ଜଣକୁ ୧ ଥାନ ଲେଖାଏଁ ଦେବାପରେ
ବାକି ରହିଲା = ୮—୪ = ୪ ଥାନ ମାଣିକ୍ୟ

ଖ'ର ୧୦ ଥାନରୁ ୪ ଜଣଙ୍କୁ ୧ ଥାନ ଲେଖାଏଁ ଦେବାପରେ
ବାକି ରହିଲା = ୧୦—୪ = ୬ ଥାଏ ଇନ୍ଦ୍ରନୀଳ

ଗ'ର ୧୦୦ ଥାନରୁ ୪ ଜଣଙ୍କୁ ୧ ଥାନ ଲେଖାଏଁ ଦେବାପରେ
ବାକି ରହିଲା = ୧୦୦—୪ = ୯୬ ଥାନ ମୁକ୍ତା

ଖ'ପାଖରେ ଥିବା ରତ୍ନର ମୂଲ୍ୟ =

| | | | |
|---|---|---|---|
| ଇନ୍ଦ୍ରନୀଳ | ୭ ଥାନକୁ = | ୧୬ × ୭ = | ୧୧୨ ଟଙ୍କା |
| ମୁକ୍ତା | ୧ ଥାନକୁ = | | ୧ ଟଙ୍କା |
| ମାଣିକ୍ୟ | ୧ ଥାନକୁ = | | ୨୪ ଟଙ୍କା |
| ହୀରା | ୧ ଥାନକୁ = | | ୯୬ ଟଙ୍କା |
| | | | ୨୩୩ ଟଙ୍କା |

ଖ ପାଖରେ ଥିବା ରତ୍ନର ମୂଲ୍ୟ =

| | | | |
|---|---|---|---|
| ମୁକ୍ତା | ୯୭ ଥାନକୁ = | ୯୭ × ୧ = | ୯୭ ଟଙ୍କା |
| ମାଣିକ୍ୟ | ୧ ଥାନକୁ = | | ୨୪ ଟଙ୍କା |
| ହୀରା | ୧ ଥାନକୁ = | | ୯୬ ଟଙ୍କା |
| ଇନ୍ଦ୍ରନୀଳ | ୧ ଥାନକୁ = | | ୧୬ ଟଙ୍କା |
| | | | ୨୩୩ ଟଙ୍କା |

'ଘ' ପାଖରେ ଥିବା ରତ୍ନର ମୂଲ୍ୟ=

ହୀରା ୨ ଥାନର ମୂଲ୍ୟ = ୨ × ୯୬ = ଟ ୧୯୨
ମୁକ୍ତା ୧ ଥାନର ମୂଲ୍ୟ = ଟ ୧
ଇନ୍ଦ୍ରନୀଳ ୧ ଥାନର ମୂଲ୍ୟ = ଟ ୧୬
ମାଣିକ୍ୟ ୧ ଥାନର ମୂଲ୍ୟ = ଟ ୨୪
ଟ ୨୩୩

∴ ପ୍ରତ୍ୟେକଙ୍କ ପାଖରେ ଥିବା ରତ୍ନ ଗୁଡ଼ିକର ମୂଲ୍ୟ = ଟ ୨୩୩

—o—

## ଶ୍ରେଣୀ ବ୍ୟବହାର

ପ୍ର—୧ ଠାରୁ ୯ ପର୍ଯ୍ୟନ୍ତ ଏକୋତ୍ତର ବୃଦ୍ଧିରେ ସମଷ୍ଟି କେତେ ହେବ ?

ନ୍ୟାସ—୧, ୨, ୩, ୪, ୫, ୬, ୭, ୮, ୯,
ସାଧନ—୧, ୨, ୩, ୪, ୫, ୬, ୭, ୮, ୯
୯+୮+୭+୬+୫+୪+୩+୨+୧
୧୦+୧୦+୧୦+୧୦+୧୦+୧୦+୧୦+୧୦+୧୦ = ୯୦

୯ ଗୋଟି ୧୦ ହେଲା

୨ଟି ପଂକ୍ତିର ସମଷ୍ଟି = ୯୦
୧ଟି ପଂକ୍ତିର ସମଷ୍ଟି = ୯୦ ÷ ୨ = ୪୫ (ଉତ୍ତର)

୨ୟ ପ୍ରଣାଳୀ—

ଆଦ୍ୟ ଓ ଶେଷାଙ୍କର ସମଷ୍ଟିର ଅର୍ଦ୍ଧକୁ ଶେଷାଙ୍କରେ ଗୁଣିଲେ ଉତ୍ତର ବାହାରିବ ।

ଯଥା — $\frac{୧+୯}{୨}$ = ୫, ୫ × ୯ = ୪୫ (ଉତ୍ତର)

ସୂ—୧୦ ଠାରୁ ୯ ପର୍ଯ୍ୟନ୍ତ ବିଷମ ରାଶିଗୁଡ଼ିକର ସମଷ୍ଟି ସ୍ଥିର କର, ୧ ଠାରୁ ୯ ପର୍ଯ୍ୟନ୍ତ ବିଷମ ରାଶି ।

ଯଥା—୧ + ୩ + ୫ + ୭ + ୯ = ୨୫

ସାଧନ—ବିଷମ ରାଶିର ଆଦ୍ୟ ଅଙ୍କ ଓ ଶେଷାଙ୍କର ସମଷ୍ଟିର ଅର୍ଦ୍ଧର ବର୍ଗ ।

୧ + ୯ = ୧୦, ୧୦ ÷ ୨ = ୫, ୫$^{୨}$ = ୨୫

୨ୟ ପ୍ରଣାଳୀ—୧ ଠାରୁ ଯେତେ ଗୁଡ଼ିଏ ବିଷମ ରାଶି ଯୋଗ କରିବାକୁ ଲୁହାଯିବ, ସେହି ବିଷମ ରାଶି ଗୁଡ଼ିକ ଯେତୋଟି ପଦ ହେବ ବା ଯେତୋଟି ଅଙ୍କ ବା ସଂଖ୍ୟା ହେବ ସେଗୁଡ଼ିକର ବର୍ଗ ।

ଯଥା—୧ + ୩ + ୫ + ୭ + ୯ + ୧୧ = ୬ ଟି ପଦ

∴ ଯୋଗଫଳ = ୬$^{୨}$ = ୩୬

୧ ଠାରୁ ୯ ପର୍ଯ୍ୟନ୍ତ ବିଷମ ବା ମୌଳିକ ରାଶିର ଯୋଗଫଳ

୩ୟ ପ୍ରଣାଳୀ—(ଆଦ୍ୟ ଅଙ୍କ + ଶେଷ ଅଙ୍କ)ର ବର୍ଗ ÷ ୪

ଯଥା—୧ = ୯ = ୧୦, ୧୦$^{୨}$ = ୧୦୦, ୧୦୦ ÷ ୪ = ୨୫

ସୂ—୧ ଠାରୁ ୧୦ ପର୍ଯ୍ୟନ୍ତ ସମାଙ୍କ ରାଶି ବା ଯୌଗିକ ରାଶିର ଯୋଗଫଳ ।

୧ମ ପ୍ରଣାଳୀ—

ଶେଷ ଅଙ୍କର ଅର୍ଦ୍ଧ, ସେଥିରେ ୧ ଯୋଗକରି ଏହି ଦୁଇ ଅଙ୍କର ଗୁଣଫଳ ।

ଯଥା—୧୦ ÷ ୨ = ୫, ୫ + ୧ = ୬, ୬ × ୫ = ୩୦ (ଉ)

